# ଫୁଲଦିଆ ଇତିବୃତ୍ତ



ଶ୍ରୀ ଅଲେଖ ଦାଶ

# ହଳଦିଆ ଇତିବୃତ୍ତ


ଲେଖକ :

ଶ୍ରୀ ଅଲେଖ ଦାଶ, ବି.ଏ., ବି.ଇଡ୍.
ଭଗବାନପୁର ଶାସନ
ହଳଦିଆ, ଖୋରଧା-୭୫୨ ୨୦୧



ପ୍ରକାଶିକା :

ଶ୍ରୀମତୀ ସଂଯୁକ୍ତା ଦାଶ
ଇ-୨୭, ବି.ଡି.ଏ. କଲୋନୀ
ଖୋରଧା-୭୫୨ ୦୫୫

ପ୍ରଥମ ପ୍ରକାଶ
୧୯୯୭

ମୁଦ୍ରଣ :
ନବଜୀବନ ପ୍ରେସ,
ବୁଧମାଚୌକ ;
କଟକ-୭୫୩୦୦୨

ମୂଲ୍ୟ :
ବାରଟଙ୍କା

# ଲେଖକ ବଂଶଲତା

ବତ୍ସ ଗୋତ୍ର, ପୂର୍ବ ବାସେଳୀସାହିରୁ ହଳଦଆ ଆସିଥିଲେ

ମଳାମ୍ବର ଦାଶ, ଅମ୍ବିକା
|
ଗୋବର୍ଦ୍ଧନ, ସୀତା
|
ଦାଶରଥି, କୌଶଲ୍ୟା

- ଚିନ୍ତାମଣି, ଦୁଳ
  - ସାରମଣି
  - ଲଙ୍କରାଜ
  - ପୀତବାସ
  - ବିଶ୍ୱନାଥ
  - ମଧୁସୂଦନ, ହେମ
    - ମାଣିକ୍ୟ
    - ମୋହ
    - ମାଳ
    - ଅଲେଖ, ସଂଯୁକ୍ତା
      - ସଚିତା
      - ଅଶୋକ, ପୁଷ୍ପାଞ୍ଜଳି
        - ବପ୍ପ
      - ୰ଅମୂଲ୍ୟ
      - ଅପୂର୍ବ
      - ଅମୃତ
      - ସଞ୍ଚିତା
      - ସଙ୍ଗୀତା
      - ସଞ୍ଚିପ୍ତା
- ଜୟକୃଷ୍ଣ, ଲବଣୀ




| | |
|---|---|
| ଗ୍ରାମ ସୀମା | - - - - - - - |
| ଅଞ୍ଚଳ ସୀମା | ∼∼∼∼ |
| ପକ୍କା ରାସ୍ତା | ═════ |
| କଚ୍ଚା ରାସ୍ତା | ───── |
| ରେଭିନ୍ୟୁ ଅଫିସ | ⌂ |

## ଜନ୍ମ ଶତବାର୍ଷିକୀ ଉପଲକ୍ଷ୍ୟେ

## (୧୮୯୭—୧୯୯୭)



## ସ୍ୱର୍ଗୀୟ ମଧୁସୂଦନ ଦାଶ

ପିତା ସ୍ୱର୍ଗୀୟ ଚନ୍ଦ୍ରାମଣି ଦାଶ          ମାତା ସ୍ୱର୍ଗୀୟା ତୁଷ୍ଟା ଦେବୀ

ଭଗବାନପୁର ଶାସନ, ହଳଦିଆ, ଖୋର୍ଦ୍ଧା

(ମୋର ଶିକ୍ଷାନୁଷ୍ଠାନ ଦକ୍ଷି ଜଗବନ୍ଧୁ, ବିଦ୍ୟାଧର ହାଇସ୍କୁଲ, ଖୋରଧାର ଶତବାର୍ଷିକ ସ୍ମରଣିକା ଅଧ୍ୟାୟ—ପତ୍ରିକା ଛପା ଓ ସବୁ କାମରେ ସହଯୋଗ । ମୋର ବିଦ୍ୟାଗୁରୁ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ସ୍ୱର୍ଗୀୟ ବିଦ୍ୟାସିଂହ ପଟ୍ଟନାୟକଙ୍କର ସଞ୍ଜ ସମିତିମାନ ଗଠନ ଓ ମୋ ପରମ ପୂଜନୀୟ ପିତାଙ୍କର ପ୍ରସ୍ତର ମୂର୍ତ୍ତି, ବହି ଛପା, ତାଙ୍କ ଅମୃତଗଛ ତଳ ସ୍ମୃତି ସିମେଣ୍ଟ ଓ ଖୋରଧାରେ ଘର କଣା )

—ଅଲେଖ

# ALL ORISSA MANGO SHOW

## ( LOCAL VARIETY )
## 1973

*This is to certify that the Local Mango* ***Gounikia*** *belonging to* ***Sri Laxmidhar Das*** *village* ***Kuaput****, Block* ***Khurda****, District* ***Puri*** *has been selected as an ELITE variety for further study.*

Sd/-
(G. C. Sengupta)
Director of
Agriculture & Food Production
Orissa, Bhubaneswar

Bhubaneswar
May 18, 1974

# ସୂଚୀ ପତ୍ର

---



ଶ୍ରୀ ଅଲେଖ ଦାଶ



ଅମୂଲ୍ୟ
(୧୨ ବର୍ଷରେ ମୃତ)



୬ ଚିନ୍ତାମଣି ଦାଶଙ୍କ ଗୃହାଙ୍ଗଣର ୧୯୧୫ ପର୍ଯ୍ୟନ୍ତ
୬ ମଧୁସୂଦନ ଦାଶଙ୍କ ବାସଗୃହ, ଶ୍ରୀ ଅଲେଖଙ୍କ ଜନ୍ମସ୍ଥଳୀ

# ହଳଦିଆ ରାଜ୍ୟ

## ଭୌଗୋଳିକ ବିବରଣୀ

### ଅବସ୍ଥିତି :

ମାନଚିତ୍ରରେ ୨୦° ଉତ୍ତର ଅକ୍ଷାଂଶ ଓ ୮୭° ପୂର୍ବ ଦ୍ରାଘିମା ସୂଚାଇଥିବା ସ୍ଥାନ ହଳଦିଆ ଅଟେ । ସମୁଦ୍ର ପତ୍ତନରୁ ଏହାର ଉଚ୍ଚତା ୧୯.୫୦ ମିଟର । ବାର୍ଷିକ ବୃଷ୍ଟିପାତ ୧୩୫.୨୩ ସେ: ମି: । ଜଳବାୟୁ ଋତୁକାଳୀନ । ଖରାଦିନେ ପ୍ରଖର ଖରା, ଶୀତ ଦିନେ ପ୍ରବଳ ଶୀତ । ଗ୍ରୀଷ୍ମକାଳରେ ସର୍ବୋଚ୍ଚ ଉତ୍ତାପ ୩୦° ସେଲ୍‌ସିୟସ୍ ଓ ଶୀତଦିନେ ସର୍ବନିମ୍ନ ଉତ୍ତାପ ୧୫.୭ ଡିଗ୍ରୀ ସେଲସିୟସ୍ ଅଟେ ।

### ଚୌହଦୀ :

ହଳଦିଆର ଉତ୍ତରରେ କଟକ ଜିଲ୍ଲାର ବାଙ୍କି ସବ୍‌ଡିଭିଜନର ସାମନ୍ତରାୟପୁର ଗ୍ରାମ । ଖଣ୍ଡିଆ ଯୋଡ଼ି ନାମକ ଏକ ବର୍ଷାଜଳପୁଷ୍ଟ ଜଙ୍ଗଲି ଜଳରସ୍ତା ହଳଦିଆ ଓ ସାମନ୍ତରାୟପୁର ସୀମା ନିର୍ଦ୍ଧାରଣ କରେ । ଏଠାରେ ଜିଲ୍ଲା ସୀମା ନିର୍ଦ୍ଦେଶକ ପଥର ପୋତା ଯାଇଛି । ସ୍ଥାନୀୟ ଭାଷାରେ ଏହି ସୀମା ସ୍ଥାନକୁ ଦୋଷମାଳ ବୋଲି ଲୋକେ କହନ୍ତି । ହଳଦିଆ ପୁରୀ ଜିଲ୍ଲାର ଉତ୍ତର ଦିଗର ଶେଷ ଗ୍ରାମ ଥିଲା । ୧-୪-୯୩ରୁ ଏହା ନବଗଠିତ ଖୋର୍ଦ୍ଧା ଜିଲ୍ଲାରେ ଅନ୍ତର୍ଭୁକ୍ତ ହୋଇଛି । ମହାନଦୀର ଦକ୍ଷିଣ ତୀରରୁ ଆରମ୍ଭ ଭାରତର ପୂର୍ବଘାଟ ପର୍ବତମାଳାର ଅଂଶ ଉତ୍ତରରୁ ଦକ୍ଷିଣକୁ ବିସ୍ତାର ଲାଭ କରି ପ୍ରାଚୀର ସଦୃଶ ଦଣ୍ଡାୟମାନ ହୋଇ ପୂର୍ବ ଦିଗର ଗତିରୋଧ କରୁଛି । ଏହାର ପୂର୍ବପଟରେ ମୌଜା ତରକାଇ, ଖୋର୍ଦ୍ଧା ଖାସମାହାଲ ଅନ୍ତର୍ଗତ ମୌଜା ଅଟେ । ଏ ଦିଗରେ ଛୋଟବଡ଼ ୨୨ଟି ପାହାଡ଼ ବିଦ୍ୟମାନ । ଚାଡ଼ଙ୍କା, ଧଣ୍ଡିଆ ଆଦି ପାହାଡ଼ ନନ୍ଦନ-କାନନ ପର୍ଯ୍ୟନ୍ତ ବିସ୍ତାରିତ ହୋଇଛି ।

ବସେଇଟାଙ୍ଗି, ବାଲିସାହି ଓ କୁମ୍ଭିଲ ମୌଜାମାନ ଦକ୍ଷିଣ ସୀମା ନିର୍ଦ୍ଧାରଣ କରୁଛନ୍ତି । ପୂର୍ବ ଦିଗରେ ପାହାଡ଼ ପରି ପଶ୍ଚିମ ଦିଗରେ ପ୍ରାକୃତିକ ସୀମାରେଖା "ରଣନଦୀ" ନିର୍ଦ୍ଧାରଣ କରୁଛି ।

ତରକାଇ, ତୁଳସୀପୁର, ଚମ୍ପତିପୁର, ସାମନ୍ତରାୟପୁର ପ୍ରଭୃତି ଗ୍ରାମମାନ ହଳଦିଆର ଚତୁଃପାର୍ଶ୍ୱସ୍ଥ ଗ୍ରାମ ଅଟନ୍ତି ।

## ମଝି ହଳଦିଆ :

ହଳଦିଆର ଆୟତନ ଏକକୋଶ ଅଟେ । ଏହାର ଉତ୍ତର-ଦକ୍ଷିଣ ବିସ୍ତାରଠାରୁ ପୂର୍ବ ପଶ୍ଚିମ ବିସ୍ତାର ଅଧିକ । ସର୍ବାଧିକ ବିସ୍ତାର ୪ କି: ମି: ମାତ୍ର । ନିମପାହି ଏବଂ ଇଲାକାର ମଧ୍ୟବର୍ତ୍ତୀ ସ୍ଥାନ । ଏଠାରେ ଦଣହର ପଡ଼ିଆ ଥିଲା ।

## ଜଳ ଗହଳେ ପୃଥ୍ୱୀନାଶ
## ଜଳ ବହୁଳେ ପୃଥ୍ୱୀନାଶ :

ହଳଦିଆର ଉତ୍ତରରେ ତମପଡ଼ା ଓ ବାଙ୍କି ଗଡ଼ଜାତ । ଅନ୍ୟ ତିନି ଦିଗରେ ଖୋର୍ଦ୍ଧା ଖାସମାହାଲ । ସମଗ୍ର ଅଞ୍ଚଳଟି ପୂର୍ବରୁ ପଶ୍ଚିମକୁ ଗଡ଼ାଣିଆ । ବର୍ଷାଦିନେ ମହାନଦୀର ବନ୍ୟାଜଳ ରଣନଦୀରେ ଉଜାଣି ଉଠି ବାଙ୍କି ତମପଡ଼ାରୁ ବାଘମାରି ପର୍ଯ୍ୟନ୍ତ ଏକ ହ୍ରଦ ସୃଷ୍ଟି କରେ । କୁଆପୁଟ, ବସନ୍ତ, ହାଟସାହି ମୌଜାମାନ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ । କୁଆପୁଟର ଶ୍ରୀ ଶ୍ରୀ ବାଲ୍ମୀକେଶ୍ୱର, ବସନ୍ତର ଶ୍ରୀ ଶ୍ରୀ ଲୋକନାଥ ଓ ହାଟ-ସାହିର ଶ୍ରୀ ଶ୍ରୀ ସୋମନାଥ ବନ୍ୟାଜଳରେ ଜଳଶାୟୀ ହୁଅନ୍ତି । ବସନ୍ତ ମୌଜା ପାଣିଘେରରେ ରହିଥାଏ । ଏଠାରେ ଚିରସ୍ରୋତା ଝରଣା ନାହିଁ । ଏଣୁ ବନ୍ୟା ଓ ମରୁଡ଼ି ହଳଦିଆର ଚିର ସହଚର ।

## ପ୍ରାକୃତିକ ବିଭାଗ :

ହଳଦିଆକୁ ଭୌଗୋଳିକ ନିୟମରେ ତିନିଭାଗରେ ବିଭକ୍ତ କରାଯାଏ ।

(କ) ପୂର୍ବ ପାର୍ଶ୍ୱସ୍ଥ ପାର୍ବତ୍ୟ ଅଞ୍ଚଳ
(ଖ) ମଧ୍ୟସ୍ଥ ମାଳଭୂମି
(ଗ) ନଦୀ-ବିଧୌତ ସମତଳ ଉପତ୍ୟକା

**ପାର୍ବତ୍ୟ ଅଞ୍ଚଳ :**

ପ୍ରଥମ ବଷ୍ଟଗଟି ଦୁର୍ଭେଦ୍ୟ । ପୂର୍ବପଟକୁ ରାସ୍ତା ନାହିଁ । ଅରଣ୍ୟ ଚଳପଥ ବିପଦସଙ୍କୁଳ । ପୂର୍ବଘାଟ ପର୍ବତ ମାଳାର ଅଂଶ ଏଠାରେ ବିଦ୍ୟମାନ । ଅରଣ୍ୟପୂର୍ଣ୍ଣ ଏହି ଅଞ୍ଚଳଟି ସ୍ଥାନୀୟ ଜନସାଧାରଣଙ୍କ ଜାଳେଣି କାଠ ଅଭାବ ପୂରଣ କରିବା ସହ ଫଳମୂଳ ଯୋଗାଇଥାଏ । ମାଡ଼ୁଆବନ୍ଧ ଓ ସାଧୁକୋଠ ପ୍ରଭୃତି ଝରଣା ଓ ଜଳାଶୟ, ଦୋରୁଅମଡ଼ା, ସମ୍ବର କାଣ୍ଡଆ, ଶୁଆଖାଇ, ପଥରଗଡ଼ା, ଛୁଗୁଡ଼ି, ଡାଳଖାଇ, ଛଞ୍ଚାଣିଆ, ବନଖଣ୍ଡି ପ୍ରଭୃତି ଜଙ୍ଗଲ ଏଠାରେ ଅଛି । ଆଗେ ଭିତର ଜଙ୍ଗଲ ବା ସଂରକ୍ଷିତ ଅରଣ୍ୟ ଓ ବାହାର ଜଙ୍ଗଲ ବା ଖୋଲା ଜଙ୍ଗଲ ବା ଲଟ ଥିଲା । ଭିତର ଜଙ୍ଗଲରେ ଦାମିକା ଗଛମାନ ରହିଥିଲା । ବାହାର ଜଙ୍ଗଲର କାଠ ସାଧାରଣ ଲୋକେ ବ୍ୟବହାର କରୁଥିଲେ ।

**ମାଳଭୂମି :**

ମଧ୍ୟସ୍ଥ ମାଳଭୂମି ଉତ୍କଟ ଜଳାଭାବ ଯୋଗୁଁ ମରୁଡ଼ି ସମସ୍ୟା ସୃଷ୍ଟି କରେ । କଙ୍କର ମୃତ୍ତିକା ଦେଖାଯାଏ । ମାଟି ଅନୁର୍ବର, ଧଳା ରଙ୍ଗର ।

**ସମତଳ ଭୂମି :**

ନଦୀ-ବିଧୌତ ଅଞ୍ଚଳଟି ସମତଳ ଭୂମିର ଅନ୍ତର୍ଗତ । ବର୍ଷା ଋତୁମାସ ଏହି ଅଂଶ ଜଳାର୍ଣ୍ଣବ ହୁଏ । ଆଶ୍ୱିନ ମାସରେ ବିରି, ମୁଗ, କୁଟ କୁଣା ବା ଅଛିଦ୍ର ହୁଏ । ମାଘମାସରେ ଏହି ରବି ଫସଲ ଅମଳ ହୁଏ । ଗୁଡ଼୍ ମାଣିକା, ମାନ କାମନା, ବାଲିଝର, ଗଜପତିବନ୍ଧ ଆଦି ଜଳାଶୟମାନ ଏଠାରେ ଅଛି । ଖରାଦିନେ ଡାଳୁଅଧାନ ଏଠାରେ ଚାଷ କରାଯାଏ ।

ହଳଦିଆର ଅବସ୍ଥିତି ଏହାକୁ ଅନ୍ୟ ଅଞ୍ଚଳରୁ ସ୍ୱତନ୍ତ୍ର ରଖି ଆସିଛି । ଖାସମହାଲ ଓ ଗଡ଼ଜାତ ମଧ୍ୟବର୍ତ୍ତୀ ଏହା ଏକ ଜମିଦାରୀ ଇଲାକା । ପ୍ରାକୃତିକ ଅବସ୍ଥିତି ଓ ସାମାଜିକ ସ୍ଥିତି ଏହାର ଶିକ୍ଷା, ସଭ୍ୟତା, ସଂସ୍କୃତି ପ୍ରଭୃତିକୁ ସ୍ୱତନ୍ତ୍ର କରିଅଛି । ଏହାର ସଭ୍ୟତା ୧୦ ମିଟର ଓସାର ରାସ୍ତାଦେଇ ଆଦାନ ପ୍ରଦାନ ହୁଏ । ଖୋର୍ଦ୍ଧା, ଉମପଡ଼ା ଓ ବାଙ୍କିକୁ ଗମନ ହୁଏ ।

ହଳଦିଆ "ହଳଦୀ" ପରି ଶୁଭ ଓ ସ୍ୱାସ୍ଥ୍ୟପ୍ରଦ ଦ୍ରବ୍ୟକୁ ବୁଝାଏ । ପ୍ରତି ଶୁଭ କାମରେ ହଳଦୀର ଆବଶ୍ୟକତା ଅନୁଭୂତ ହୁଏ । ପାଞ୍ଚ ମୌଜାର ଲୋକେ ନିଜକୁ ହଳଦିଆ ଅଧିବାସୀ ବୋଲି ପରିଚୟ ଦେଇଥାନ୍ତି । ଯଦିଓ ହଳଦିଆ ଗଡ଼ ନାମରେ ଏକ ମୌଜା ଅଛି ତଥାପି ହଳଦିଆ ସବୁ ମୌଜା ଲୋକଙ୍କର ଆଦରଣୀୟ । ହାଟ, ସ୍କୁଲ, କଲେଜ, ଡାକଘର, ଆମ୍ବ ପ୍ରଭୃତି ପ୍ରତ୍ୟେକ "ହଳଦିଆ" ନାମ ପ୍ରଥମରେ ବହନ କରି ସ୍ଥାନର ମହତ୍ତ୍ୱ ବଢ଼ାଇଥାନ୍ତି । ଏହା ଅନନ୍ୟ-ସାଧାରଣ ।

## ମୌଜା ବିବରଣୀ :

ପାଞ୍ଚୋଟି ମୌଜାକୁ ନେଇ ହଳଦିଆ ଗଠିତ ହୋଇଅଛି ।

୧ । ବସନ୍ତ

୨ । କୁଆପୁଟ

୩ । ହଳଦିଆଗଡ଼

୪ । ବ୍ରାହ୍ମଣ ବେରଣୀ

୫ । ହାଟ ସାହି

## ବସନ୍ତ :

ଏହା ହଳଦିଆ ଅଞ୍ଚଳର ପ୍ରଥମ ଜନବସତି ଅଞ୍ଚଳ । ବସନ୍ତ ଋତୁରେ ତାଳଚେରରାଜା ଏଠାକୁ ଉତ୍ତମ ଜଳବାୟୁ ଲାଭ କରିବାକୁ ଆସନ୍ତି । ତଦନୁଯାୟୀ ମୌଜାଟିର ନାମକରଣ ହୋଇଛି । ଏ ମୌଜାରେ ମାଛ ବା ନଈ ଅଛି ମାଛ ଗଛ ବା ଜଙ୍ଗଲ ନାହିଁ । ମୌଜାଟିରେ ମଧୁ-ବୈଶ୍ୟ, ଯାଦବ, କୃଷୀକୁଳ, ଧୋବା, ଭଣ୍ଡାରୀ ଆଦି ଜାତିର ବାସିନ୍ଦା ଅଛନ୍ତି । ବ୍ରାହ୍ମଣ ଘରଟିଏ ନିକଟରେ ସ୍ଥାପନ କରିଛନ୍ତି । ସ୍ଥାନଟି ରାଜ ପ୍ରତିଷ୍ଠିତ ଓ ଅଧ୍ୟୁଷିତ । ଗଡ଼ଦ୍ୱାର, ଗଡ଼ପୋଖରୀ, ପ୍ରାଚୀନ କୂପ ଏହାର ମୂକ ସାକ୍ଷୀ । ଚତୁଃପାର୍ଶ୍ୱ କୃଷିଜମି ପରିବୃତ୍ତ ବସତିର ବୃଦ୍ଧି ସୀମିତ ରହିଛି । ଏ ଗ୍ରାମ ମଧ୍ୟକୁ ରଣନଦୀର ବନ୍ୟାଜଳ ପଶି ରହେ । ହଳଦିଆର ପ୍ରଥମ ଜନବସତି ଏଇଠାରୁ ଆରମ୍ଭ । ଏଠାରେ ରାଜା ରହୁଥିଲେ ମଧ୍ୟ ବସନ୍ତ ଗଡ଼ ବା ଗଡ଼ବସନ୍ତ ବୋଲି ଲେଖା ନାହିଁ ।

**କୁଆପୁଟ :**

ହଳଦିଆର ବୃହତ୍ତମ ମୌଜା କୁଆପୁଟ । ଇଲାକାର ପ୍ରଧାନ ଗୁମାସ୍ତା ଏଠାରେ ରହୁଥାନ୍ତି । ଭଗବାନପୁର ଶାସନ, ଚଳସାହି, ଦଣ୍ଡେଇ ସହର ସାହି, ପାଟଣା, ମହୁଲସାହି, (ବେଲଛପଡ଼ା) କୁଆପୁଟରେ ସାମିଲ ଅଟନ୍ତି । ମୌଜାଟିର ପ୍ରସାର ପୂର୍ବକୁ ହେଉଛି । ଲୋକମାନେ ଜଙ୍ଗଲ ସଫା କରି ବାସସ୍ଥାନ ନିର୍ମାଣ କରୁଛନ୍ତି । ମୌଜା ନାମାନୁକରଣରେ କୁଆଶବ୍ଦ ଧାରଣ କରି କୁଆପୋଖରୀ ଓ କୁଆଖାଇ, କୁଆମଇଡା, କୁଆଚକ୍କଣ ଜଙ୍ଗଲ ଅଛି । ଅତୀତରେ କୁଆକୁଣ୍ଡ ଓ କୁଆଚକ୍କଣ ସେହିପରି ଆଉ ଦୁଇଟି ନାମ । କୁଆପୁଟରେ ବ୍ରାହ୍ମଣ, କ୍ଷତ୍ରିୟ, ମାଳି, ଖଣ୍ଡାୟତ, ବଣିଆ (ସୁନାରୀ ଓ ପୁଟୁଳି), କଂସାରି, ତେଲିକ ବୈଶ୍ୟ, ଯାଦବ, ଭଣ୍ଡାରୀ, ଧୋବା, କୁମ୍ଭାର, କୈବର୍ତ୍ତ ଜାତିର ଲୋକ ରହନ୍ତି । ଏ ମୌଜାରେ ଗଛ ଓ ମାଛ ଅର୍ଥାତ୍ ଜଙ୍ଗଲ ଓ ନଦୀ ଅଛି । ପରିମଳା କାବ୍ୟର ଲେଖକଙ୍କ ବାସସ୍ଥଳୀ ସେ ବାସସ୍ଥଳୀ ରୂପେ ଏ ମୌଜାର ସୁନାମ ଅଛି । ପାନବରଜ ଗ୍ରାମରୁ କର ସାଙ୍ଖ୍ୟଧାରୀ ବ୍ରାହ୍ମଣ ବଂଶଧରରୁ ଏଠାକୁ ଆସିଛନ୍ତି । ବତ୍ସସ ଗୋତ୍ରୀ ଶ୍ରୀ ନୀଳାମ୍ବର ଦାସ ପୁରୀ ବାସେଳୀ ସାହିରୁ ଅଣାଗଲେ । ଏହାଙ୍କୁ ରାଜଗୁରୁ ଉପାଧି ଦିଆଗଲା ଓ ୭ ବାଟି ଜମି ଲାଖରାଜ ବାବଦରେ ଭୋଗଦଖଲ ଦେଲା । ଭରଦ୍ୱାଜ ଗୋତ୍ରୀ ମିଶ୍ର ବ୍ରାହ୍ମଣ ବାସୁଦେବପୁରରୁ ଅଣାଗଲେ । ସାମନ୍ତରା ପୁରରୁ କୌତ୍ସସ ଗୋତ୍ରୀ ଶ୍ରୀ ଯୋଗୀନାଥ ମିଶ୍ର ଆସିଲେ ।

ଓଡ଼ିଆ ସାହିତ୍ୟର ମୂଳକାବ୍ୟ "ପରିମଳା"ର ଲେଖକ ନରସିଂହ ସେଣ, "ପଥ୍ୟାପଥ୍ୟ ନିଘଣ୍ଟୁ"ର ଲେଖକ ବିଶ୍ୱନାଥ ସେଣ, ତାନ୍ତ୍ରିକ ସାଧକ ବନଖଣ୍ଡି ମଠର ବଜ୍ରାଙ୍ଗୀ ଦାସ, ଊନବିଂଶ ଶତାବ୍ଦୀର ରାସ, ରାମଲୀଳା ପ୍ରଭୃତି ସାଂସ୍କୃତିକ ଅନୁଷ୍ଠାନ ସହିତ ମୌଜାଟି ଜଡ଼ିତ । ଏଠାର ଶିଳ୍ପୀ, ସ୍ୱର୍ଣ୍ଣ, ରୌପ୍ୟ, ତାମ୍ର ଧାତୁରେ ଦେବତା ମୂର୍ତ୍ତି ଗଠନରେ ପ୍ରସିଦ୍ଧ ଅଟନ୍ତି ।

**ହଳଦିଆ ଗଡ଼ :**

ହଳଦିଆ ନାମ ସହିତ ଗଡ଼ ଶବ୍ଦ ଥିବାରୁ ଏ ମୌଜାରେ ରାଜାଙ୍କ ଅବସ୍ଥାନ ସୂଚନା ଦିଏ । ଗଡ଼ ବା ଉପରଗଡ଼, ପାଇକେରା ସାହି,

ଛଳଗଡ ବା ପୁରୁଣାଗଡ଼, ବାଉଶ ସାହି, ହାଡ଼ିସାହି, ବାଉ ସହଦ୍ରସାହି ଏ ମୌଜାର ଅନ୍ତର୍ଗତ । ଦୁଇଟି ଗଡରୁ ରାଜାଙ୍କ ନୂତନ ଓ ପୁରାତନ ବାସସ୍ଥଳୀର ଆଭାସ ମିଳେ । ଏହା ମାରେଙ୍ଗା କ୍ଷତ୍ରିୟ ବା ଭଞ୍ଜ ଉପାଧି-ଧାରୀ ରାଜା ତଥା ସମ୍ପୃକ୍ତଙ୍କ ବାସସ୍ଥଳୀ । ଉପର ଗଡ଼ରେ ଗୋଟିଏ ବ୍ରାହ୍ମଣ ପରିବାର, କେତେକ କ୍ଷତ୍ରିୟଙ୍କ ସମ୍ପର୍କୀୟ ବ୍ୟକ୍ତିତ ଅନ୍ୟ ସମସ୍ତେ ବଶିଷ୍ଠ ଗୋତ୍ରୀ ଅଣି ଓ ଛଣି ଭଞ୍ଜଙ୍କ ଦାୟାଦ ଅଟନ୍ତି । ଛଳଗଡରେ ଭଞ୍ଜ ଓ ବ୍ରାହ୍ମଣ ରହନ୍ତି । ଗଡଜାତ ରାଜାଙ୍କ ଉଆସ ପର୍ବତ ପାଦଦେଶରେ । ହଳଦିଆ ରାଜାଙ୍କ ଉଆସ ସେହି ନଅପୁରର ଅନ୍ତର୍ଗତ । ଏ ମୌଜାରେ ଜଙ୍ଗଲ ଭରପୂର ମାଳ ଜଣ ନାହିଁ । ଗୋଟିଏ ଜାତିର ଲୋକ ରହୁଥିବାରୁ ମୌଜାର ଅଭିବୃଦ୍ଧି ହେଉନାହିଁ । ହଳଦିଆର ଏହି ମୌଜା ରାଜନଗର, କଲେଜ, ଡାକ୍ତରଖାନା, ସ୍କୁଲ, ଡାକଘର ପ୍ରଭୃତିକୁ ନେଇ ସମୃଦ୍ଧ । ଆକ୍ଷେପ ରଥ ପୂଜା ଦକ୍ଷିଣ ଶାସନରୁ ଆସିଲେ । ଭଞ୍ଜଙ୍କର ନ୍ୟାମ୍ ବଦ୍ରିଙ୍କ ଅଞ୍ଚଳବାସୀ ମାନନ୍ତି । ଏମାନେ ସୁଲେଖକ, କବି, ଶିକାରୀ ତଥା ଅତିଥିପରାୟଣ ଅଟନ୍ତି ।

## ବ୍ରାହ୍ମଣବେରଣୀ :

ମୌଜା ନାମକରଣରୁ ଅନୁମିତ ହୁଏ ଯେ ଏଠାରେ ବ୍ରାହ୍ମଣଙ୍କ ବ୍ରହ୍ମ ଜମି ଥିଲା । ଏ ମୌଜାରେ ପ୍ରଧାନତଃ କୃଷୀ କୁଳ ଜାତି, କୁମ୍ଭାର, ଭଣ୍ଡାରୀ, ବେହେରା, ମଧୁବୈଶ୍ୟ, ଜ୍ୟୋତିଷ ବା ମାଟିବଂଶ ଅବଧାନ, ହାଡ଼ି ଜାତିର ଲୋକ ବାସିନ୍ଦା ଅଟନ୍ତି । କଟକ ଜିଲ୍ଲାରୁ ଆଗନ୍ତୁକ ସ୍ୱର୍ଗତ ଗୋବିନ୍ଦ ଲେଙ୍କା ଏଠାକାର ପ୍ରଥମ ଅଧିବାସୀ ।

ନମସାହି, ଜ୍ୟୋତିଷ ସାହି, ମୂଳ ସାହି, ହାଡ଼ିସାହି ଓ ଶଅର ସାହିକୁ ନେଇ ମୌଜାଟି ଗଠିତ । ଭଗବାନପୁର ଶାସନ ସ୍ଥାପନ ପରେ ଏ ମୌଜାର ସୃଷ୍ଟି ବୋଲି ଅନୁମାନ ହୁଏ । ଗାଉଁଲି କୃଷି କଳାରଦ-ମାନେ ଏଠାରେ ଅଛନ୍ତି ।

## ହାଟ ସାହି :

ହାଟୁଆ ବା ବ୍ୟବସାୟୀ ଶ୍ରେଣୀର ଲୋକେ ଏଠାରେ ବାସ କରନ୍ତି । ଏମାନଙ୍କ ମଧ୍ୟରେ କୃଷୀକୁଳ, କୈବର୍ତ୍ତ, ବୁଣାକାର (ତନ୍ତୀ), ତୈଳିକ ବୈଶ୍ୟ, ମଧୁବୈଶ୍ୟ, ଯାଦବ, ଗୋଖା (ମତ୍ସ୍ୟଜୀବୀ), କଣ୍ଡରା,

'ପାଣ, ହାଡ଼ ଏ ମୌଜା ବାସିନ୍ଦା । ଏହା ହଳଦଆର ବ୍ୟବସାୟ କେନ୍ଦ୍ର । ମୌଜାଟିରେ ନଈ ଅଛୁ ମାଷ ଜଙ୍ଗଲ ନାହିଁ । ବିଭିନ୍ନ ଜାତିର ଲୋକ, ମୂଳ ସାହି, କଣ୍ଡରସାହି, ହାଡ଼ସାହି, ଗୋଖାସାହି ସମ୍ମିଶ୍ରଣରେ ହାଟସାହି ଗଠିତ । ହଳଦଆର ନିତ୍ୟବ୍ୟବହାର୍ଯ୍ୟ ଦ୍ରବ୍ୟର କଣାବିକା ଏଠାରେ ହୁଏ ।

## ନାମକରଣ :

ହଳଦଆ ନାମ ଆମ ରାଜ୍ୟରେ ନୂଆ ବା ଦୁଷ୍ପ୍ରାପ୍ୟ ନୁହେଁ । ଓଡ଼ିଶା ରାଜ୍ୟର ବିଭିନ୍ନ ସ୍ଥାନରେ ହଳଦଆଡିହା, ହଳଦଆପଦା, ହଳଦପଦର, ହଳଦବସନ୍ତ ନାମରେ ଜନପଦମାନ ଅଛୁ । ବିଦଗ୍ଧ ଚିନ୍ତାମଣି କାବ୍ୟର ରଚୟିତା ବୈଷ୍ଣବ କବି ଅଭିମନ୍ୟୁ ସାମନ୍ତ-ସିଂହାରଙ୍କର ଜନ୍ମସ୍ଥାନ ଯାଜପୁରଠାରୁ । କଲୋମିଟର ଦୂର ହଳଦଆ ଗ୍ରାମରେ । ସେହି ଯାଜପୁର ଜିଲ୍ଲାରେ ସୁକିନ୍ଦା ନିକଟରେ ହଳଦଆ ନାମକ ମୌଜା ଅଛୁ । ମାହାଙ୍ଗା ଥାନା କେନ୍ଦ୍ରାପଡ଼ା ଜିଲ୍ଲାର ହଳଦଆ ଗ୍ରାମରେ ହଳଦଆ ହାଇସ୍କୁଲ୍ ଓ ହଳଦଆ ଗ୍ରାମ ପଞ୍ଚାୟତ ରହିଛୁ । କଥନ-ଅନୁଯାୟୀ ଅଣି ଭଞ୍ଜ ଓ ଛଣି ଭଞ୍ଜ ଦୁଇଭାଇ ମୟୂରଭଞ୍ଜ ବାସିନ୍ଦା । ଯୁବକ ଅବିବାହିତ, ବଳବାନ୍ । ବଶିଷ୍ଠ ଗୋତ୍ରୀ । ଏମାନେ କ୍ଷତ୍ରିୟ । ସୂର୍ଯ୍ୟବଂଶୀ ଅଟନ୍ତି । ଶ୍ରୀ ଶ୍ରୀ ନୀଳାଚଳନାଥଙ୍କ ଦର୍ଶନ ନିମିତ୍ତ ଦୁଇଭାଇ ଶ୍ରୀକ୍ଷେତ୍ରକୁ ଚାଲି ଚାଲି ଆସିଥିଲେ । ଏଠାରେ ଗଜପତିଙ୍କୁ ନିଜର ଶୌର୍ଯ୍ୟ ପ୍ରକାଶନ ଦେଖାଇ ସନ୍ତୁଷ୍ଟ କରାଇଲେ । ମହାରାଜାଙ୍କର କନ୍ୟାଙ୍କର ବିବାହ ଜ୍ୟେଷ୍ଠ ଭ୍ରାତା ଅଣି ଭଞ୍ଜଙ୍କ ସହ ହେଲା । ଏହି ଦମ୍ପତ୍ତିଙ୍କ ପ୍ରଥମ ସନ୍ତାନର ହଳଦୀ ମଥାଇ ଖର୍ଚ୍ଚ ବାବଦକୁ ଯେଉଁ ଅଞ୍ଚଳ ଖଞ୍ଜାଗଲା ତାହା "ହଳଦଆ" ।

"ହଳଦୀ" ସର୍ବଜନାଦୃତ । ସ୍ୱାସ୍ଥ୍ୟପାଇଁ ଏହା ଦୈନିକ ଖାଦ୍ୟରେ ବ୍ୟବହାର କରାଯାଏ । ସୁନ୍ଦର ଓ ନିରୋଗ ସ୍ୱାସ୍ଥ୍ୟପାଇଁ ଆବାଳବୃଦ୍ଧ-ବନିତା ହଳଦୀ ମାଖି ହୁଅନ୍ତି । ନୂଆ ଲୁଗା ପିନ୍ଧା, ମଙ୍ଗଳ କାର୍ଯ୍ୟରେ ହଳଦୀ ଅନିବାର୍ଯ୍ୟ ବସ୍ତୁ । ପାଞ୍ଚମୌଜାରେ ଲୋକ ନିଜକୁ ହଳଦଆବାସୀ ବୋଲି ପରିଚୟ ଦେଇ ଗର୍ବ କରନ୍ତି । ହାଟ, ରାଜା, ଆମ୍ବ, ବସ, ଡାକଘର, କଲେଜ, ସ୍କୁଲ ଓ ଗଡ଼ ପ୍ରଭୃତି ହଳଦଆ ନାମ ପ୍ରଥମେ

ଧାରଣ କରି ହଳଦିଆର ଅଭିଜ୍ଞତା ତଥା ଏକତା ସଂହତି ପ୍ରମାଣ କରନ୍ତି । ସମସ୍ତଙ୍କର ପ୍ରିୟ, ହଳଦିଆ ସ୍ଥାନ ଅନନ୍ୟ ସାଧାରଣ ।

ହଳଦିଆ ରାଜା ୬ ଶ୍ୟାମସୁନ୍ଦର 'କେଳି କଳାନିଧି' ପୁସ୍ତକ ରଚନା କରିଥିଲେ ସେଥିରେ ଉଲ୍ଲେଖ ଅଛି—

ଭଣେ ହରିଦ୍ୱାର ନର ପ୍ରବର
ଘନମତି ଭଞ୍ଜ ଶ୍ୟାମସୁନ୍ଦର ॥

ଅନ୍ୟତ୍ର— ହରିଦ୍ୱାର ଦୁର୍ଗ ନୃପ ପ୍ରବର
ଘନମତି ଭଞ୍ଜ ଶ୍ୟାମସୁନ୍ଦର ॥

ଏଣୁ ଏ ସ୍ଥାନର ନାମ "ହରିଦ୍ୱାର" ଥିଲା । କାଳକ୍ରମେ ହଳଦିଆ ହୋଇଛି ।

"ମା" ଗଙ୍ଗାନଦୀ ନିକଟସ୍ଥ ତୀର୍ଥସ୍ଥାନ ହରିଦ୍ୱାର ଅନୁକରଣରେ ଏ ସ୍ଥାନର ନାମ ହରିଦ୍ୱାର ହୋଇଥିବ ।

ପୁନଶ୍ଚ ହଳଦିଆ ଓ ଡମପଡ଼ା ଜଙ୍ଗଲ ଆଗେ ସିଂହ, ବାଘ ପ୍ରଭୃତି ହିଂସ୍ର ଜନ୍ତୁରେ ପୂର୍ଣ୍ଣ ଥିଲା । ଏହି ଜଙ୍ଗଲର ପଶୁମାନେ ମହାପର୍ବତକୁ, ବାଙ୍କୀ ଜଙ୍ଗଲକୁ ଏହି ଅଞ୍ଚଳର ଅପେକ୍ଷାକୃତ ଅଳ୍ପ ରାସ୍ତା ଦେଇ ପାରି ହୁଅନ୍ତି । ପଶୁରାଜ ସିଂହଙ୍କର ଅନ୍ୟନାମ 'ହରି' । ଏଣୁ ହରିଦ୍ୱାର ନାମକରଣ ଯଥାର୍ଥ ।

ହଳଦିଆ ଅଞ୍ଚଳର ନାମକରଣରେ ରସିକତା ଲକ୍ଷ୍ୟ କରନ୍ତୁ ।

| | |
|---|---|
| ଭଗବାନ ରାଜାଙ୍କ ନାମାନୁଯାୟୀ | ଭଗବାନପୁର ଶାସନ । |
| କୁଆ ବହୁଳ ଓ ପୂଠ ଯୋଗକରି | କୁଆପୂଠ । |
| ବ୍ରାହ୍ମଣମାନଙ୍କ ଜମି ଥିବା ପଡ଼ା | ବ୍ରାହ୍ମଣବେରଣୀ । |
| ଜାମୁଗଛର ପ୍ରାଚୁର୍ଯ୍ୟ ହେତୁ | ଜାମସାହି । |
| ହାଟ ବା ବଜାର ହେଉଥିବା ସ୍ଥାନ | ହାଟସାହି । |
| ଶ୍ରେଷ୍ଠ ଋତୁ ବସନ୍ତ ଉପଭୋଗ୍ୟ ସ୍ଥାନ | ବସନ୍ତ । |
| ମହୁଲ ଗଛର ପ୍ରାଚୁର୍ଯ୍ୟ ଯୋଗୁଁ | ମହୁଲସାହି । |
| ବାଡ଼ପଟେ ଥିବା ସହରସାହି | ବାଡ଼ ସହରସାହି । |
| ଦାଣ୍ଡପଟର ସହରସାହି | ଦାଣ୍ଡସାହି ବା ଦଣ୍ଡେଇସାହି । |

| | |
|---|---|
| ପ୍ରାଚୀନ ଗଡ଼ | ପୁରୁଣାଗଡ଼ । |
| ହଳଦୀ ଓ ଗଡ଼ ଶବ୍ଦ ସମନ୍ୱୟରେ | ହଳଦିଆ ଗଡ଼ । |
| ଉଠାଣିରେ ଥିବା ଗଡ଼ | ଉପର ଗଡ଼ । |
| ଗଡ଼ାଣିରେ ଥିବା ଗଡ଼ | ତଳଗଡ଼ । |
| ବାଡ଼ପଟ ପୋଖରୀ | ବାଡ଼ ପୋଖରୀ । |

ନାମ ଦେବାରେ ରସିକ ବୋଲଉଥିବା ଅଞ୍ଚଳର ଲୋକେ ହଳଦୀ ଉତ୍ପନ୍ନ ଅଞ୍ଚଳକୁ ହଳଦିଆ କହୁଥିବେ । ଜଙ୍ଗଲରେ ହଳଦୀବସନ୍ତ ପକ୍ଷୀ ରହନ୍ତି । ଆମ୍ବ ବା ଫଳ ପାଚିଲେ ବା ପତ୍ର ପାଚିଲେ ହଳଦିଆ ଦିଶେ । ମା’ ସୁଭଦ୍ରାଙ୍କ “ମୁଖ”ର ବର୍ଣ୍ଣ ହଳଦିଆ । କନିଅର ଫୁଲ ପରି ରଙ୍ଗ ମୁହଁ ମା’ଙ୍କର ।

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ,
ପତିତତାରିବା ପାଇଁକି ॥ ଘୋଷା ॥
ଆଗେ ବଳଭଦ୍ର ପଛରେ କାଳିଆ
ମଝିରେ “ହଳଦୀ”ମୁହାଁ କି ।

## ଖଦଡ଼ିଆ ହଳଦୀ

୧ । ହଳଦୀ ମନ୍ଥଇ ପାଇଁ ଉଦ୍ଦିଷ୍ଟ ଅଞ୍ଚଳ ହଳଦୀମନ୍ଥେଇ ନାମ ଧାରଣ କରିବା ଉଚିତ ଥିଲା । କୁଆପୁଟ ମୌଜାରେ ଏବେବି “ତେଲି ଚିଶାଇ” ନାମକ ଏକ ସ୍ଥାନ ଅଛି । (ଚିଶୋଇ ତେଲିଙ୍କ ନାମ) ମନ୍ଥକ ଶବ୍ଦକୁ ଉଡ଼ାଣ, “ହଳଦୀ” ଶବ୍ଦରେ ‘ଆ’ ଯୋଗ ସମୁଦାୟ ନାମର ବିକୃତାଂଶ । ନାମକରଣରେ ଧୁରନ୍ଧର ଅଞ୍ଚଳର ଲୋକେ ଏପରି କଲେ କିପରି ?

୨ । ଶ୍ରୀମନ୍ଦିରର ମାଦଳା ପାଞ୍ଜିରେ ହଳଦିଆ କାହାଣୀ ନାହିଁ ।

୩ । ଗଜପତି ୧୮୦୭ରୁ କ୍ଷେତ୍ରବାସୀ ହେଲେ । ସେହି ସମୟରେ ସମୃଦ୍ଧ ଇତିହାସ ହଳଦିଆ ଅଞ୍ଚଳ ବିଷୟରେ ନୀରବ ।

୪ । ବିଶ୍ୱର ଚଳନ୍ତି ବିଷ୍ଣୁ ଓଡ଼ିଶାର ଲକ୍ଷେ ରଜାଙ୍କ ମଉଡ଼ମଣି କାହାର ଶାଳକ ହେବାର ପରମ୍ପରା ନାହିଁ । ପୁନଶ୍ଚ ପୁରୀ ଜେମାଙ୍କ ଦୁଆର

ବିଶ୍ୱ ଜାତକରେ ନ ଥାଏ । ଜନ୍ମିତ କନ୍ୟା ଅନ୍ୟକୁ ଧର୍ମଚିହ୍ନ କରି ଦିଆଯାଏ । ଅଣି ଭଞ୍ଜଙ୍କ ସ୍ଥଳେ ଏପରି ବ୍ୟତିକ୍ରମ କପରି ହେଲା ?

୫ । ବରର ରୂପ, ଗୁଣ ଓ ବିଭବ ବିଚାର କରାଯାଇ କନ୍ୟା ଦାନ କରାଯାଏ । ଗଜପତି କେବଳ ଶୌର୍ଯ୍ୟର ପ୍ରମାଣ ପାଇ ଝିଅ ବିଭା କଲେ କପରି ? ଏହା ଅସମ୍ଭବ ।

୬ । ହଳଦିମଥେଇ ପାଇଁ ଖଞ୍ଜା ଯାଇଥିବା ଅଞ୍ଚଳର ପୂର୍ବନାମ କଅଣ ଥିଲା ?

୭ । ରାଜ୍ୟର ଅନ୍ୟତ୍ର ହଳଦିଆ ନାମରେ ଜନପଦ ଅଛି । ମାତ୍ର ଅଣି ଭଞ୍ଜ ହଳଦିମଥେଇ ଗଳ୍ପ ସେଠାରେ ପ୍ରଚଳିତ ନାହିଁ ।

୮ । କେବଳ ବ୍ରାହ୍ମଣଙ୍କ ବ୍ୟତୀତ ଅନ୍ୟ ମୌଜାଗୁଡ଼ିକରେ "ରାଜା" ସର୍ବସମ୍ମତ ସମ୍ବୋଧିତ ପଦବୀ ନୁହେଁ ।

୯ । ଅଣି ଭଞ୍ଜ ଗଳ୍ପ ଏକ ମନଗଢ଼ା କାହାଣୀ । କେଉଁ କେଉଁ ଏଥିରେ ଲେମ୍ବୁ ଗଳ୍ପ—ଗଜପତି ଉପରକୁ ଫିଙ୍ଗିବା ଲେମ୍ବୁକୁ ଖଣ୍ଡାରେ ଅଣି ଭଞ୍ଜ ସମଦ୍ବିଖଣ୍ଡ କଲେ ଓ ଏକ ବାଘକୁ ଶାରୀରିକ ବଳ-ପ୍ରୟୋଗ କରି ମାରିଦେଲେ ଇତ୍ୟାଦି ଯୋଡ଼ି ଦିଅନ୍ତି ।

୧୦ । ନାମକରଣଟି ସମ୍ପୂର୍ଣ୍ଣ ରହସ୍ୟାବୃତ୍ତ ।

୧୧ । ପୂର୍ବ ଉପକୂଳ ପଶ୍ଚିମବଙ୍ଗରେ ହଳଦିଆ ଏକ ବନ୍ଦର ।

## ଏ ନୁହେଁ ସିଦ୍ଧବନ

ରାମାୟଣ ବର୍ଣ୍ଣିତ ବିଶ୍ୱାମିତ୍ର ମୁନି ସିଦ୍ଧବନରେ ଆଶ୍ରମ କରିଥିଲେ । ସେଠାରେ ଯଜ୍ଞ କରୁଥିଲେ । ସ୍ଥାନଟି ପବିତ୍ର ଥିବାରୁ ତଥା ସିଦ୍ଧିଲବ୍ଧ ହେଉଥିବାରୁ ସିଦ୍ଧବନ ନାମର ସାର୍ଥକତା ପ୍ରତିପାଦନ କରୁଥିଲେ । ଏହି ବନଟି ଅଯୋଧ୍ୟା ଓ ଗଙ୍ଗାନଦୀ ମଧ୍ୟବର୍ତ୍ତୀ ଅଞ୍ଚଳରେ । ଏହା ଗଙ୍ଗାନଦୀର ଉତ୍ତରପାର୍ଶ୍ୱରେ । ଉତ୍ତର ପ୍ରଦେଶରେ । ଏଠାରେ ସୁନ୍ଦରାକ୍ଷସ, ପତ୍ନୀ ତାଡ଼କା ଓ ଦୁଇପୁଅ ମାରୀଚ ସୁବାହୁଙ୍କ ସହ ବାସ କରୁଥିଲେ । ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କ ଇଙ୍ଗିତରେ ତାଡ଼କାକୁ ମାରିଥିଲେ । ମାରୀଚ ଓ ସୁବାହୁଙ୍କୁ ଶରମାରି ଉଡ଼ାଇ ଦେଇଥିଲେ । ଏସବୁ ସିଦ୍ଧବନରେ ହୋଇଥିଲା ।

ହଳଦଆ ଗଙ୍ଗାନଗର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ । ପୁଣି ଅଯୋଧ୍ୟା କଥା କଏ ପଶ୍ଚିମରେ ମିଥିଳାଠାରୁ ହଳଦଆ ବହୁ ଦୂରରେ । କେହି କେହି ଏହାର ତାଡ଼କା ପାହାଡ଼କୁ ସିଦ୍ଧବନ ବର୍ଣ୍ଣନା କରନ୍ତି । ପାହାଡ଼ର ଶୀର୍ଷ ଦେଶରେ ଏକ ପଥରରେ ଥିବା ଖାଲକୁ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ତାଡ଼କା ବଧ ସମୟର ଆଣ୍ଠୁ ଚିହ୍ନ ରୂପ ଦର୍ଶାନ୍ତି । ଏହା ଅଳୀକ । ତାଡ଼କା ପାହାଡ଼ ସିଦ୍ଧବନ ନୁହେଁ ।

"ତାଡ଼କା"ର କନ୍ୟା "ତରକା" ହଳଦଆ ପାହାଡ଼ରେ ତପସ୍ୟାରତ ଥିଲା । ତା'ର ନାମାନୁସାରେ ପାହାଡ଼ର ନାଁ "ତାଡ଼କା" ।

ରଜଯାତ୍ରା ସମୟରେ ବହୁ ଭ୍ରମଣପ୍ରେମୀ ତାଡ଼କା ଉପରକୁ ଯାଇ ଚତୁଃପାର୍ଶ୍ୱସ୍ଥ ନଦୀ, ପର୍ବତ, ଶସ୍ୟ କ୍ଷେତର ଶୋଭା ଉପଭୋଗ କରନ୍ତି ।

୧୯୮୮ ମସିହାରେ କୁଦଆଗ୍ରାମର ଏକ ଶିଶୁ ଏଠାକୁ ଆସି ରାମନାମ ଜପକଲା । ତାକୁ ଦେଖିବାକୁ ଓ ନାମ ଶୁଣିବାକୁ ବହୁ ଜନ-ସମାଗମ ହେଲା । ଏହା ସେତେବେଳେ ଚମକ ସୃଷ୍ଟି କରିଥିଲା । ଏବେ ସେଠାରେ ମନ୍ଦିରଟିଏ କରିବାକୁ ଜନମତ ପ୍ରକାଶ ପାଉଛି ।

## ମୁଣ୍ଡିର ଅନ୍ୟ ନାମ ରଣ

"ରଣ" ବାହୁବଳ୍ ଏକ ନାଳ ବା ଯୋଡ଼ ଥିଲା । କ୍ରମେ ଏହା ନଦୀର ଆଖ୍ୟା ଗ୍ରହଣ କରିଛି । ଏ ନଦୀର ନାମ "ରଣ" ମନରେ ଭୟ ସଞ୍ଚାର କରେ । ବାଘମାଙ୍କ ନିକଟରେ ଏହାର ଶଯ୍ୟାରେ ବାର୍କୀ ଓ ଖୋର୍ଦ୍ଧା ରାଜ୍ୟଦ୍ୱୟ ମଧ୍ୟରେ ଯୁଦ୍ଧ ହୋଇଥିଲା । ଯୁଦ୍ଧର ଅନ୍ୟ ନାମ "ରଣ" । କେହି କେହି କହନ୍ତି ଏ ନଦୀର ମହାନଦୀ ସହ ସଙ୍ଗମ ସ୍ଥାନରେ ବନ୍ୟାବେଳେ ପ୍ରବଳ ବଳ କଷାକଷି ହୁଏ । ମହାନଦୀର ଜଳ ଅଣ ନିଃଶ୍ୱାସୀ ହୋଇ ଏଇ ବାଟେ କୁଆଡ଼େ ପଳାଇବାକୁ ବାଟ ଖୋଜେ । ପଶ୍ଚାତ୍ତରେ ଏହାର ଅବବାହିକାର ଜଳ ଏହି ନଦୀ ଦେଇ ମହାନଦୀକୁ ପ୍ରବଳ ବେଗରେ ଗତି କରେ । ଉଭୟ ସ୍ରୋତ ଓ ପ୍ରତି-ସ୍ରୋତରେ ରଣ ମୁହଁରେ ସଂଘର୍ଷ ଘଟେ । ତେଣୁ ନଦୀର ନାମକରଣରେ ଯାଥାର୍ଥ୍ୟ ଅଛି । ଏହାର ଅନ୍ୟନାମ "କୁଆକୁଣ୍ଡ ନଈ", "ବେକମୋଡ଼" "ତତଗ" ଇତ୍ୟାଦି । "ରଣ" ଏକ ଉପନଦୀ ବା ଚିରବର୍ତ୍ତୀ ନଦୀ ।

ଦଧିମାଛଗାଡ଼ିଆ, ତାଳଚୋଳା ଓ ମାଣିବନ୍ଧ ପ୍ରଭୃତିର ଧାର କୁଆକୁଣ୍ଡ ଉପରେ ଓ ତଳେ ନଦୀର ଶଙ୍କୁ ସୃଷ୍ଟି କରିଛନ୍ତି । ଖୋରଧା ବାଘମାରି ରାସ୍ତାର ସିମେଣ୍ଟ ଶଙ୍କର କୁଆକୁଣ୍ଡର ଶରସ୍ରୋତା ଉତ୍ସ ଜଳଧାର ଏ ନଦୀରେ ପ୍ରବାହିତ ହୁଏ । ଏହି ରାସ୍ତାର ଠିକ ତଳେ ନଦୀର ନାମ "ବେକମୋଡ଼" । ରଣର ଦୈର୍ଘ୍ୟ ପ୍ରାୟ ୪୪ କିଲୋମିଟର । ନଦୀର ରାସ୍ତା ଏକ ଯନ୍ତାରେ ଅବସ୍ଥିତ । ପଶ୍ଚିମରେ ମାମୁଁ ଭଣଜା ଓ ପୂର୍ବରେ ହଳଦିଆ, ତପଡ଼ା ପାହାଡ଼, ଦକ୍ଷିଣରେ ଟାଙ୍ଗିଣୀ ପାହାଡ଼, ରାଜନପଡ଼ା ପାହାଡ଼ ।

## ରାସ୍ତା ଯନ୍ତା :

ରଣନଦୀର ଉତ୍ତରରେ କଟକ—ବଲାଙ୍ଗୀର ପ୍ରାଚୀନ ରାସ୍ତା । ଦକ୍ଷିଣରେ ଖୋର୍ଦ୍ଧା—ବଳଦ ରାସ୍ତା । ଷ୍ଟେଟ୍ ହାଇୱେ ନଂ-୧ । ପଶ୍ଚିମରେ ବାଘମାରି—ବାଙ୍କୀ ରାସ୍ତା । ପୂର୍ବରେ ଖୋର୍ଦ୍ଧା—ତପଡ଼ା ରାସ୍ତା । ଏ ସବୁ ରାସ୍ତା ବଢ଼ ବଢ଼ିରେ ବୁଡ଼ିଯାଏ । ଗମନାଗମନ ବନ୍ଦ ହୁଏ । କୁସୁପଦା, ଗେଙ୍ଗୁଟିଆ, ଶଅରମାହ୍ଣ, ଚାଁଳବସ୍ତ, ପଦନପୁର ଓ ହଳଦିଆଠାରେ ଘାଟମାନ ଅଛି । ଗ୍ରୀଷ୍ମ ଦିନେ ଠାଏ ଠାଏ ନଦୀ ଶୁଖିଯାଏ । ପ୍ରଥମ ବନ୍ୟାବେଳେ ଅଡ଼ଙ୍ଗା (ମାଛ) ମରିଯାଏ । କୁସୁପଦାଠାରୁ ରଣମୁହଁଯାଏଁ ପାଣି କଳାଧୂସର । ଏଠାରେ "ଗଣ୍ଡ" ଅଛି । ନଦୀର ଉଭୟ ପାର୍ଶ୍ୱ ଉର୍ବର ପଟୁମାଟିରେ ଗଠିତ । ଆଖୁ, ବିରି, ମୁଗ, ବୁଟ ଓ ବାଦାମ ଫସଲ ହୁଏ । ରଣ ମୁହଁରେ ଉଠାଜଳସେଚନ ଅଛି । ତାକୁ ଅଧାର ଏହାର ଅର୍ଥକାରୀ ଫସଲ । କରବରର ଗିରଗିରିଆ ତୁଳସୀପୁର ଘୋଡ଼ାବନ୍ଧ ହଳଦିଆ ଆଦିର ଗୋଖା ଏ ନଦୀରୁ ମାଛମାରି ଚଳନ୍ତି ।

କଥାରେ ଅଛି—ରଣ ବଣ ଛଣ ।

ବାଙ୍କୀ ରଜା ଥାଇ ବୋଲେ ମୋ ଭଡ଼ୁଆ ବାଇଗଣ ।

ବନ୍ୟା ବେଳେ ରାସ୍ତାଯନ୍ତା ପାଣିରେ ବୁଡ଼ି ରହି ଏକ ହ୍ରଦ ସୃଷ୍ଟି କରେ ।

ରଣପରି ନଦୀ ବିରଳ । ଏ କଥା ସତ ଯେ ଏହା ଶାଖା ନଦୀ ନୁହେଁ । ମାଧ ବନ୍ୟାବେଳେ ଏ ନଦୀର ଜଳ ନଦୀ ଉପୁଛି ସ୍ଥଳକୁ ପ୍ରର୍ଣ

କରେ । ଏହା ବଡ଼ର ଓ ଦୁର୍ଲଭ । ଏ ନଦୀର ମଧ୍ୟଭାଗ ହଳଦିଆଠାରେ ଖଗ୍ରାଦନେ ଅସ୍ଥାୟୀ ପୋଲ ହୁଏ । ଏଠାରେ ଏକ ସ୍ଥାୟୀ ପୋଲ ହେଲେ ଖୋରଧା ବାଙ୍କ ଦୂରତା ୨୦ କଲୋମିଟର କମିଯାଆନ୍ତା ।

ଏ ନଦୀର ଡାଳଚୋକାଠାରେ ଏକ "ଡାଳଚୋକା କଟ୍" କରି ମଲଗୁଣୀ ନଦୀ ସହ ସଂଯୋଗ ପାଇଁ ଏକ ଯୋଜନା ଅଛି । ଏଇ ବାଟେ ମହାନଦୀର ପାଣି ମଲଗୁଣୀ ଓ ଦୟା ନଦୀବାଟେ ଚିଲିକାକୁ ଯିବ ।

## ଲୁହା ପୋଲ :

ରଣ ମୁହଁରେ ଏକ ଲୁହା ପୋଲ ଅଛି । ଏହା ୧୯୧୯ ମସିହାରେ ବର୍ଣ୍ଣକମ୍ପାନୀ (Burn Company) ଦ୍ୱାରା ନିର୍ମିତ ହୋଇଥିଲା । ଏଠାରେ କୁମ୍ଭୀର ଦେଖାଯାଆନ୍ତି । ଆଗେ ଗୋଧେଇ ମୁହଁ ଦୁର୍ବଳ ଥିବାରୁ ବନ୍ୟାଜଳ ବାଙ୍କୀଗଡ଼ଠାରେ ରଣକୁ ମାଡ଼ି ଯାଉଥିଲା । ବାଙ୍କୀ ତତ୍ପୂର୍ବ ବୀରେନ୍ଦ୍ରକୃଷ୍ଣ ଏ ବନ୍ଧକୁ ମଜବୁତ କରିବାରୁ ଆଜି ସେତେ ବଢ଼ି ହେଉ ନାହିଁ । ତେବେ ୧୯୮୨ ମସିହାରେ ରେଣୁକା ଘାଇ ଚର୍ଚ୍ଚିକା ନିକଟରେ ଭାଙ୍ଗି ମହାନଦୀ ରଣନଦୀ ଏକ ହେଲେ । ବହୁ କ୍ଷତି ଘଟାଇଲେ ।

## ରଣର ଦାନ :

ରଣନଦୀ କୂଳରୁ ବହୁ ଗେଙ୍ଗୁଟି ପଥର ମିଳେ । ଏହାକୁ ସଂଗ୍ରହ କରି ଚୂନ ପୋଡ଼ାଯାଏ । ଚର୍ଚ୍ଚିକାର ଶିକକଳ ରଣ ଉପତ୍ୟକାର ଆଖୁ ଚାଷ ଯୋଗୁଁ ସମ୍ଭବ ହୋଇଛି । ରଣର ଉଭୟ ପାର୍ଶ୍ୱ ବାଲୁକାଶୂନ୍ୟ ପଟୁମାଟି ପୂର୍ଣ୍ଣ ।

## ଦ୍ୱୀପ :

ହଳଦିଆର ପାଟିଆ ଗମ୍ଭାରିଠାରେ ଓ ଭୁଳଧୀପୁର ପିଢା ରାସ୍ତାରେ ରଣ ଦୁଇଭାଗ ହୋଇ ପୁନର୍ବାର ମିଳିତ ହୋଇଛି ।

## ସର୍ବାଙ୍ଗ ପବିତ୍ର ନଦୀ :

କାଶ୍ୟାଂ ଗଙ୍ଗାଃସୂର୍ଯ୍ୟୋତ୍ତର ବାହିନୀ । ଗଙ୍ଗା ଉତ୍ତର ଦିଗକୁ କାଶୀଠାରେ ପ୍ରବାହିତ ହୋଇଛି । ତେଣୁ କାଶୀ ପବିତ୍ର । ରଣ ନଦୀ

ମୂଳରୁ ଶେଷଯାଏ ଉତ୍ତରକୁ ପ୍ରବାହିତ ହୋଇଛି । ଏହାର ସର୍ବାଙ୍ଗ ପବିତ୍ର । ଏଠାରେ ସ୍ନାନ, ଦାନ, ପିଣ୍ଡଦାନ କର୍ତ୍ତବ୍ୟ । ସଙ୍ଗମସ୍ଥଳରେ ଜାଟମୁଣ୍ଡିଆଠାରେ ବାର୍ଷିକ ମେଳା ବସେ ।

## ପରିବହନ

ଦୁର୍ଭେଦ୍ୟ ଧଣ୍ଡିଆ ପାହାଡ଼ ଓ ଦୁଃସାଧ୍ୟ ବଣଜଙ୍ଗଲ ଭିତର ଦେଇ ପୂର୍ବ ଦିଗରେ ରାସ୍ତା ନାହିଁ । ମୁକ୍ତାପୁରଠାରୁ ବଘେଇଟାଙ୍ଗି, ବସନ୍ତ, ବ୍ରାହ୍ମଣବରଣୀ, ନମସାହି, ହାଟସାହି, ବାଉଶ ସାହି, କୁଆପୁଟ ମୌଜା ପଶ୍ଚିମ ପଟ ଦେଇ ସାମନ୍ତରାପୁର ଯିବାକୁ ହେଉଥିଲା । ଜିଲ୍ଲା ବୋର୍ଡ଼ ରାସ୍ତା ଖୋରଧାରୁ ହଳଦଆକୁ ତାଙ୍କୀ ମୁଣ୍ଡିଆ ମଧ୍ୟ ଦେଇ ଆସିଲା । ସେହିପରି ଡମପଡ଼ାରୁ ସାମନ୍ତରାପୁରକୁ କଟକ ଜିଲ୍ଲା ବୋର୍ଡ଼ ରାସ୍ତା ନିର୍ମିତ ହେଲା । ଏସବୁ ୧୯୧୪ ପୂର୍ବକଥା । ୧୯୩୪ରେ ହଳଦଆ ଗଡ଼ ମୁଣ୍ଡରୁ ସାମନ୍ତରାପୁରକୁ ରାସ୍ତା ସଂଯୋଗ ହେଲା ।

ଏହି ରାସ୍ତାଟି ହେବାରେ ଦ୍ୱିମତ ହେଲା । ପ୍ରଥମ ଯୁକ୍ତି ହେଲା ରାସ୍ତା ବର୍ତ୍ତମାନର ବାଟ ଦେଇ ଗଲେ ଜଙ୍ଗଲ ମଧ୍ୟରେ ବାଘ ମାଣିଦେବ, ଅପରପକ୍ଷରେ କୁଆପୁଟ ତଳପାଖେ ଗଲେ ନଈ ବଢ଼ି ବେଳେ କୁମ୍ଭୀର ଗିଳିଦେବ । ଶାସନର ଶ୍ରୀ ବୈରାଗୀ ଚରଣ ମିଶ୍ରଙ୍କ ଅକ୍ଳାନ୍ତ ଉଦ୍ୟମରେ ଓ ଜମିଦାର ଶ୍ରୀ ରଘୁନାଥ ଭଞ୍ଜ ଖାରବର ଜଗଦ୍ଦେବଙ୍କ ଇଙ୍ଗିତରେ ରାସ୍ତାଟି ବର୍ତ୍ତମାନର ରୂପରେଖ ନେଲା । ଏହା ଫଳରେ ଖୋରଧାରୁ ଡମପଡ଼ାକୁ ସର୍ବସାଧାରଣ ରାସ୍ତା ହେଲା ।

ଖାଣ୍ଡବେ ହାଟ ଛକରୁ ଭୁଳସୀପୁରକୁ ଯିବା ରାସ୍ତା ସଚଳ ହୁଏ । କାରଣ ଏଣେ ନଈରେ ଡଙ୍ଗା ଭୁଠରେ ଅସ୍ଥାୟୀ ପୋଲ ହୁଏ । ବର୍ଷସାରା ଡଙ୍ଗାର ବ୍ୟବସ୍ଥା ଥିବାରୁ ଏବଂ ଖୋରଧା ଓ ବାଙ୍କୀକୁ ଏଇଟି ସିଧାରାସ୍ତା ଥିବାରୁ ଯୋଗାଯୋଗ ଲାଗି ରହେ । କୁଆପୁଟଠାରୁ ନଈରେ ଏକ ପଣା ରାସ୍ତାରେ ଭୁଳସୀପୁର ଯାଇ ହୁଏ । ହଳଦଆରୁ ଜଙ୍ଗଲ ଓ ପାହାଡ ମଧ୍ୟ ଦେଇ ସିଧା ରାସ୍ତାରେ କଟକ ଯାଇ ହେବ । ଚାଲିକରି ଗଲେ ମାତ୍ର ୪ଘଣ୍ଟା ଲାଗିବ ।

## ଗମନାଗମନ

ନିକଟବର୍ତ୍ତୀ ରେଳଷ୍ଟେସନ ଖୋରଧା ରୋଡ଼ ମାତ୍ର ୨୭ କି: ମି: ଦୂର । ବିମାନ କେନ୍ଦ୍ର ଭୁବନେଶ୍ୱର ୪୩ କି: ମି: । ୧୯୫୧ ରୁ ଜଟଣୀରୁ ଡମପଡ଼ା ଏକ ଘରୋଇ ବସ ଚାଲିଲା । ସେହି ସମୟରେ ଅନ୍ୟ ଏକ ଘରୋଇ ବସ ହଳଦିଆରେ ରାତିରେ ରହି ଡମପଡ଼ା ଦେଇ କଟକ ଯିବା ଆସିବା କଲା । ଏପ୍ରିଲ ୧୯୫୫ ରୁ ଓ.ଆର୍.ଟି. ବସ ହଳଦିଆରୁ ଜଟଣୀ ଦେଇ କଟକ ଯିବା ଆସିବା କରୁଛି । ଏବେ ଏହି ବସ କଟକ, ଭୁବନେଶ୍ୱର, ଖୋର୍ଦ୍ଧା ଓ ହଳଦିଆ ମଧ୍ୟରେ ଯିବା ଆସିବା କରି ରାତିରେ ହଳଦିଆରେ ରହୁଛି । ବର୍ତ୍ତମାନ ସମୟରେ ବାଙ୍କୀ, ଡମପଡ଼ା ଓ ଚାଳ-ବସ୍ତ ଦେଇ ପାରଦ୍ୱୀପ ଭୁବନେଶ୍ୱର କଟକ ପୁରୀ ଓ କଲିକତାକୁ ଘରୋଇ ତଥା ସରକାରୀ ବସମାନ ଧାଉଁଛି । ଏବେ ବହୁ ମାଟାଡୋର ଓ ଭିଲେଜରୁ ଏହି ରାସ୍ତାକୁ ଚଳଚଞ୍ଚଳ କରୁଛନ୍ତି ।

ଚାଳବସ୍ତ ପାହାଡ଼ରୁ ଖଡ଼ିପଥର ନେଇ କେତେକ ଟ୍ରକ ଦୈନିକ ବାରଙ୍ଗ, ପୁରୀ, ଜଟଣୀ ଓ ରାଜଗାଙ୍ଗପୁରକୁ ଯିବା ଆସିବା କରେ । ବାଙ୍କୀରେ ଭୁଭୁଆ ବାଇଗଣ ଟ୍ରକରେ ଖୋରଧା ଆସେ ।

ବର୍ଷାଦିନେ ରଣନଈର ଘାଟରେ ଡଙ୍ଗା ରହେ । ଏହାକୁ ଡଙ୍ଗା ଭୁଠ କୁହାଯାଏ । ଆଗେ କୁଆପୁଟ ମୌଜାରେ ଡଙ୍ଗାଭୁଠ ଥିଲା— ଯେଉଁଠି, ନଈଟି ଦୁଇଭାଗ ହୋଇ ଦ୍ୱୀପ ସୃଷ୍ଟି କରିଛି । କୁଆପୁଟରେ ନାଉରୀ ପରିବାର ଶ୍ରୀ ଭ୍ରମରବର ବେହେରା ଓ ଶ୍ରୀ ଧନେଶ୍ୱର ବେହେରା ଏଠାରେ ଘାଟ ନିଲାମ ନିଅନ୍ତି । କୁଆପୁଟ ମଧ୍ୟରେ ଏକ ରାସ୍ତା ବରିହଲ ବାଟଦେଇ ତୁଳସୀପୁର ଯାଇଛି । ଖନ୍ଦନଆଁ ରାସ୍ତାଟିଏ । ହାଟଛକରୁ ଗୋଟିଏ ଅର୍ଦ୍ଧ ବୃତ୍ତାକାର ରାସ୍ତା ବ୍ରାହ୍ମଣବେରଣୀ, ବସନ୍ତ ଓ ବଘେଇ-ଟାଙ୍ଗି ଦେଇ ଖୋରଧା ରାସ୍ତାକୁ ଯୋଗ କରିଛି । ଅନ୍ୟ ଏକ ଅର୍ଦ୍ଧ-ବୃତ୍ତାକାର ରାସ୍ତା ସେହି ହାଟଛକରୁ ନିମସାହି ହାଟସାହି ଓ କୁଆପୁଟ ଦେଇ ଖୋରଧା ଡମପଡ଼ା ରାସ୍ତାକୁ ସ୍ପର୍ଶ କରିଛି ।

## ହଲଦପାଣିରେ ସୂର୍ଯ୍ୟୋପରାଗ ଦେଖ

ହଳଦିଆର ଶିକ୍ଷା ସ୍ଥାନୀୟ ବ୍ୟକ୍ତିଙ୍କ ଉତ୍ସାହ ଉପରେ ନିର୍ଭର କରୁଥିଲା । ମାଟିବଂଶର ଅବଧାନ ବ୍ରାହ୍ମଣ ଓ କ୍ଷତ୍ରିୟ ପ୍ରଭୃତି ଉଚ୍ଚ-ଜାତିର ବ୍ୟକ୍ତିମାନେ ଘରଖସ୍ଥ ଶିକ୍ଷା ଦାନ କରୁଥିଲେ । ଏମାନଙ୍କୁ ଭକ୍ତିରେ ଓ ଶ୍ରଦ୍ଧାରେ "ଆପଣେ" ବୋଲି ସମ୍ବୋଧନ କରାଯାଉଥିଲା ।

ହଳଦିଆର ଆନୁଷ୍ଠାନିକ ଶିକ୍ଷାଦାନ ଆରମ୍ଭ ହେଲା ତା ୨-୧-୧୯୦୧ ମସିହାରେ । ସେ ବର୍ଷ ହଳଦିଆ ନି: ପ୍ରା: ସ୍କୁଲ ପ୍ରତିଷ୍ଠା ହେଲା । ଗଡ଼ ମଧ୍ୟସ୍ଥ ଚଣ୍ଡୀଙ୍କ ପୀଠରେ ଶିକ୍ଷାଦାନ କାର୍ଯ୍ୟ ଚାଲିଲା । ମାତ୍ର ୧୯୧୭ରେ ବିଦ୍ୟାଳୟଟିକୁ ଗଡ଼ର ପଶ୍ଚିମପ୍ରାନ୍ତ ଖୋରଧା-ହଳଦିଆ ରାସ୍ତାର ବାମକଡ଼ରେ ସ୍ଥାପନ କରାଗଲା । ଏହି ସ୍ଥାନଟି ଦଶହରା ପଡ଼ିଆ ନାମରେ ପୂର୍ବରୁ ଅଭିହିତ ଥିଲା ।

୧୯୪୫-୪୭ ମସିହାରେ ବିଦ୍ୟାଳୟଟି ଚଳଗଡ଼ ବା ପୁରୁଣା ଗଡ଼ରୁ ପୂର୍ବପ୍ରାନ୍ତକୁ ଖୋରଧା ତମପଡ଼ା ରାସ୍ତା ସଂଲଗ୍ନରେ ଗଡ଼ି ଉଠିଲା । ଏଥିପାଇଁ ବିଦ୍ୟାନୁରାଗୀ ଜମିଦାର ଶ୍ରୀ ରଘୁନାଥ ଭଞ୍ଜ ବୀରବର ଜଗଦେବଙ୍କ ଦୂରଦୃଷ୍ଟି ପ୍ରଶଂସାର୍ହ । ଏବେ ସ୍କୁଲଟି ସରକାରୀ ହୋଇଛି ୧୯୮୯ରୁ । ୧୯୧୫ ମସିହାରୁ ନି: ପ୍ରା: ବିଦ୍ୟାଳୟଟି ଉ:ପ୍ରା: ବିଦ୍ୟାଳୟକୁ ଉନ୍ନୀତ ହୋଇଥିଲା ।

### ବିଦ୍ୟାଳୟର ହେଡ୍‌ପଣ୍ଡିତଗଣ :

| | | |
|---|---|---|
| ଶ୍ରୀ ସାଟେ ବର ପାତ୍ର | ବ୍ରାହ୍ମଣବେରଣୀ | ୧୯୦୧—୧୩ |
| ଶ୍ରୀ ଧାଟ ବନ୍ଧୁ ଭଞ୍ଜ | ଗଡ଼ | ୧୯୦୩—୧୪ |
| ଶ୍ରୀ ଅନ ମ ନନ୍ଦ | ଘାଟିକିଆ | ୧୯୧୫—୧୯ |
| ଶ୍ରୀ କା ିନାଥ ମିଶ୍ର | ବାଜପୁର | ୧୯୧୯—୨୫ |
| ଶ୍ରୀ ପଦ ଷେଚ ଭଞ୍ଜ | ଗଡ଼ | ୨୦-୧-୨୫—୧-୨-୨୭ |
| ଶ୍ରୀ ଆ ବନ୍ଧୁ ମହାପାତ୍ର | — | ୧-୨-୨୭—୮-୨-୨୮ |
| ଶ୍ରୀ ଗେ ବିନ୍ଦ ଚନ୍ଦ୍ର ନାୟକ | — | ୧-୪-୩୨—୧-୧୨-୩୨ |
| ଶ୍ରୀ ଚନ୍ଦ୍ରଶେଖର ଶତପଥୀ | ଟାଙ୍ଗିଆପଡ଼ା | ୧-୧୨-୩୨—୧୧-୩-୩୫ |
| ଶ୍ରୀ ଉଦୟନାଥ ହରିଚନ୍ଦନ | ,, | ୧୧-୩-୩୫—୭-୮-୪୭ |

| | | |
|---|---|---|
| ଶ୍ରୀ ପଦ୍ମନାଭ ଭଞ୍ଜ | ଗଡ଼ | ୧୮-୮-୪୭—୨-୧୨-୪୭ |
| ଶ୍ରୀ ବିପିନ ବିହାରୀ ଭଞ୍ଜ | ଗଡ଼ | ୩-୧୨-୪୭—୨୧-୭-୭୨ |
| ଶ୍ରୀ ଲକ୍ଷ୍ମୀଧର ଭଞ୍ଜ | ଗଡ଼ | ୨୨-୭-୭୨—୩୦-୮-୭୨ |
| ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର | ଶାସନ | ୩୦-୮-୭୨—୩୦-୮-୭୭ |
| ଶ୍ରୀ ସୁରେନ୍ଦ୍ରନାଥ ମିଶ୍ର | ପୁଟନଆଳ | ୧-୯-୭୭—୧୪-୯-୭୫ |
| ଶ୍ରୀ ଅନ୍ତର୍ଯାମୀ ରଥ | ସାମନ୍ତରାପୁର | ୧୫-୯-୭୭ |
| ଶ୍ରୀ ସୁରେନ୍ଦ୍ର କୁମାର ମିଶ୍ର | ପୁଟ ନଆଳ | |
| ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର | କୁମ୍ଭେଲ | |
| ଶ୍ରୀ ଚନ୍ଦ୍ରାମଣି ଜେନା | କୁଆପୁଟ | |
| ଶ୍ରୀମତୀ ମନୋରମା ମିଶ୍ର | ଭଗବାନପୁର ଶାସନ | |

ବସନ୍ତ ମୌଜାରେ ନ: ପ୍ରା: ବିଦ୍ୟାଳୟ ହେବା ପୂର୍ବରୁ ହାଟ-ସାହିରେ ଶ୍ରୀ ନାରାୟଣ ସାହୁ ଚାହାଳୀ କରିଥିଲେ । ୧୯୧୯ରେ ଶ୍ରୀ ସାହୁଙ୍କ ପ୍ରଧାନଶିକ୍ଷକତ୍ୱରେ ସେଠାରେ ବିଦ୍ୟାଳୟ ସ୍ଥାପନ କରାଗଲା । ୧୯୭୦ ମସିହାରୁ ଏହା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପରିଣତ ହେଲା । ସେହି ସ୍ଥାନରେ ୧-୧୦-୮୭ରୁ ପଞ୍ଚାୟତ ମି: ଇ: ସ୍କୁଲ କାର୍ଯ୍ୟକାରୀ ହେଲା । ଶ୍ରୀ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀଙ୍କ ପରେ ଶ୍ରୀ ରବୀନ୍ଦ୍ର କୁମାର ଶତପଥୀ ପ୍ରଧାନ-ଶିକ୍ଷକ ଅଛନ୍ତି ।

ତା ୧୦-୯-୧୯୫୯ରୁ ବ୍ରାହ୍ମଣଦେଉଳି ମୌଜାର ପୂର୍ବପ୍ରାନ୍ତରେ ନିମ୍ନ ପ୍ରାଥମିକ ସ୍କୁଲଟିଏ କରାଗଲା । ତା ୯-୮-୧୯୭୫ରେ ଏଥିରେ ୪ର୍ଥ ଓ ୫ମ ଶ୍ରେଣୀ ଯୋଗ କରାଗଲା । ୧୯୮୭ରୁ ଗୋଟିଏ ମି: ଇ: ବିଦ୍ୟାଳୟ ଏଠାରେ ସ୍ଥାପିତ ହେଲା ।

ଗଡ଼ମଧ୍ୟସ୍ଥ ଶ୍ରୀ ଚଣ୍ଡୀଙ୍କଠାରୁ ବିଦ୍ୟାଳୟ ଦକ୍ଷିଣର ପଡ଼ିଆକୁ ସ୍ଥାନାନ୍ତରିତ ହେବା ପରେ ପୂର୍ବୋକ୍ତ ସ୍ଥାନରେ ବାଳିକା ସ୍କୁଲଟିଏ ଖୋଲାଗଲା ମାତ୍ର ପରେ ଏହା ବନ୍ଦ ହୋଇଗଲା ।

୧୯୪୫-୪୬ରୁ ହଳଦିଆ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହେଲା । ଏହା ୧-୪-୬୧ରୁ ସରକାରୀ ହେଲା । ନ: ପ୍ରା: ଓ ମହାବିଦ୍ୟାଳୟ ମଧ୍ୟରେ ଖୋରଧା ଜମପଡ଼ା ରାସ୍ତା ବିଭାଜକ ରୂପେ ରହିଗଲା ।

## ଭଗବାନପୁର ଶାସନ ଟୋଲ

ଭାରତୀୟ ଚିନ୍ତାଧାରା ସଂସ୍କୃତିକୁ ପ୍ରସ୍ଥର ଓ ପ୍ରଚାର କରିବାକୁ ଜମିଦାର ଓ ବ୍ରାହ୍ମଣମାନଙ୍କ ଉଦ୍ୟମରେ ହଳଦିଆ ଟୋଲ ସ୍ଥାପିତ ହେଲା । ଏଠାରେ ପ୍ରଥମା ମଧ୍ୟମା ଓ ଶାସ୍ତ୍ରୀ ପାଠ୍ୟ ଥିଲା । ୧୯୫୪ରୁ ଟୋଲର ନାମ ଭଗବାନପୁର ଶାସନ ଟୋଲ ରଖାଗଲା । ଏହି ଗୌରବମୟ ଶିକ୍ଷାନୁଷ୍ଠାନ ୧-୧୦-୧୯୨୭ରୁ ପ୍ରତିଷ୍ଠା କରାଗଲା । ରାଜା କିଛି ଧାନ ଦେବାକୁ କିଛି ଜମି ଅଲଗା କରି ରଖିଥିଲେ । ମାତ୍ର କ୍ରମେ ବ୍ରାହ୍ମଣ ମହାଜନମାନେ ନିଜ ସମ୍ପତ୍ତିରୁ ଏହାର ରକ୍ଷଣାବେକ୍ଷଣ ଓ ଯାବତୀୟ ଖର୍ଚ୍ଚ ଚଳାଇଲେ ।

ଅନୁଷ୍ଠାନଟି ପ୍ରଥମେ ବ୍ରାହ୍ମଣ ପିଲା ଓ ଗ୍ରାମର ସଂସ୍କୃତଜ୍ଞ ବ୍ରାହ୍ମଣମାନଙ୍କଦ୍ୱାରା ଗାଁର ବଡ଼ଲୋକ ବ୍ୟକ୍ତିଙ୍କ ବାରଣ୍ଡା ଓ ଦାଣ୍ଡଘରେ ହେଲା । ଶ୍ରୀ ଚିନ୍ତାମଣି ମିଶ୍ର, ଶ୍ରୀ ଦୀନବନ୍ଧୁ ଦାଶ, ଶ୍ରୀ ଗଦାଧର ମିଶ୍ର ଓ ଶ୍ରୀ ଆର୍ତ୍ତବନ୍ଧୁ ମିଶ୍ର ଏହାର ଉଦ୍ୟୋକ୍ତା ଅଟନ୍ତି ।

କ୍ରମେ ଅଧିକରୁ ଅଧିକ ଛାତ୍ର ଆକୃଷ୍ଟ ହେବାରୁ ଶିକ୍ଷାନୁଷ୍ଠାନଟି ବର୍ତ୍ତମାନର ଫଳଫୁଲ ଶୋଭିତ ବୃକ୍ଷରାଜି, ଶାନ୍ତ ପରିବେଶ ତଥା ଚତୁର୍ଦ୍ଦିଗରେ ବୃକ୍ଷ ପରିଶୋଭିତ ସ୍ଥାନର ସ୍ଥାୟୀ ଗୃହରେ କରାଗଲା । କିନ୍ତୁ ଛାତ୍ରାବାସ ଓ ପଣ୍ଡିତଙ୍କ ବାସସ୍ଥଳୀ ଶାସନ ମଧ୍ୟସ୍ଥ କୋଠାଘରେ ରହିଲା । ଏବେ ଯେଉଁଠାରେ ଶିକ୍ଷାନୁଷ୍ଠାନମାନ ଶୋଭାପାଇ (ସରସ୍ୱତୀ ବିହାର) ହଳଦିଆର ମାନ ବଢ଼ାଇଛନ୍ତି ସେଠାର ପ୍ରଥମ ଅନୁଷ୍ଠାନ ଟୋଲ ।

ଟୋଲଟିକୁ ସ୍ୱୀକୃତି ମିଳିବା ଦିନଠାରୁ ଜମିଦାର ପଣ୍ଡିତଙ୍କ ଖୋରାକ ବହନ କଲେ । ୧୯୫୭ ପର୍ଯ୍ୟନ୍ତ ଏହା ଚାଲିଥିଲା । ତା'ପରେ ବନ୍ଦ ହୋଇଗଲା । ଏହି ଅନୁଷ୍ଠାନର ପଣ୍ଡିତଗଣ ହେଉଛନ୍ତି—

ଶ୍ରୀ ମହାଦେବ ମିଶ୍ର
ଶ୍ରୀ ଆର୍ତ୍ତବନ୍ଧୁ ମିଶ୍ର
ଶ୍ରୀ ଗଦାଧର ମିଶ୍ର
ଶ୍ରୀ ଲକ୍ଷ୍ମୀରାଜ ମିଶ୍ର, କୁମ୍ଭିଲୋ ।
ଶ୍ରୀ ମୃତ୍ୟୁଞ୍ଜୟ ରଥ, ଭୁବନେଶ୍ୱର ରଥଗଡ଼ା ସାହି, ୧୯୨୯—୧୯୫୭
ଶ୍ରୀ ଗୋଦାବରୀଶ ପ୍ରହରାଜ, ଭଗବତୀ ପ୍ରସାଦ ୧୯୫୭—୭୫

୦ ଶ୍ରୀ ନରହରି ରଥ, ସାମନ୍ତରାପୁର ୧୯୬୬

ଶ୍ରୀ ମୃତ୍ୟୁଞ୍ଜୟ ରଥଙ୍କ ସମୟରେ ସ୍କୁଲର ଛାତ୍ରମାନେ ଓଡ଼ିଶାରେ ନାଁ କରିଥିଲେ । ସେ ସ୍ୱୀୟ ପ୍ରତିଭା ବଳରେ ଶ୍ରୀ ଜଗନ୍ନାଥ ବିଶ୍ୱବିଦ୍ୟାଳୟରେ ବ୍ୟାକରଣରେ ଅଧ୍ୟାପକ ହୋଇପାରିଲେ ।

୧୯୫୬ରୁ ନୂତନ ପାଠ୍ୟକ୍ରମ ପ୍ରବର୍ତ୍ତିତ ହେଲା । ଶ୍ରୀ ସନାତନ ଭଞ୍ଜ ୧୪-୨-୫୫ରୁ ୨୨-୯-୫୬ ଯାଏ ଓ ଶ୍ରୀ ବିଜୟ କିଶୋର ସିଂହ ୨୩-୯-୫୬ ପର୍ଯ୍ୟନ୍ତ ୨ୟ ଶିକ୍ଷକ ରହିଲେ । ୧୯୫୬ରୁ ଏକ ଲୁଟ୍ୟ ଗ୍ରାଣ୍ଟ ମିଳିଲା ।

**ସମ୍ପାଦକ ଗଣ :**

ଜମିଦାର ଶ୍ରୀ ରଘୁନାଥ ଭଞ୍ଜ ବୀରବର ଜଗଦେବ
ପ୍ରାରମ୍ଭରୁ (୧୯୨୭)—୧୯୫୬.

ଶ୍ରୀ ନରସିଂହ ପ୍ରଧାନ ୧୯୫୬—୧୧ । ୮ । ୬୩
ଶ୍ରୀ ଚନ୍ଦ୍ରଶେଖର ମିଶ୍ର ଶର୍ମା—୧୨ । ୮ । ୬୩ ।
୭ । ୬ । ୯୪ରୁ ସରକାରୀ ହେଲା ।

ତା ୧ । ୮ । ୪୫ରୁ ହଳଦିଆ ମି: ଇ: ସ୍କୁଲ ଖୋଲିଗଲା ।

ତା ୧ । ୬ । ୪୬ରେ ବିଭାଗୀୟ ମଞ୍ଜୁରୀ ଲାଭ କଲା ।

ଶ୍ରୀ ଜାନକୀରାମ ଭଞ୍ଜ ପ୍ରାରମ୍ଭରୁ ସମ୍ପାଦକ ଥିଲେ ।

**ପ୍ରଧାନଶିକ୍ଷକ ଗଣ :**

ଶ୍ରୀ ଗଉରକୃଷ୍ଣ ଭଞ୍ଜ—୧ । ୮ । ୪୫-୩୧ । ୩ । ୪୬
ଶ୍ରୀ ବାଞ୍ଛାନିଧି ନାୟକ—୮ । ୪ । ୪୬-୧୦ । ୧୦ । ୪୭
ଶ୍ରୀ ବିନୋଦ ବିହାରୀ ପାଣିଗ୍ରାହୀ—୧୪ । ୧୦ । ୪୬-୩ । ୧୧ । ୪୮
ଶ୍ରୀ ସୁଦର୍ଶନ ମିଶ୍ର—୧ । ୩ । ୫୮
ଶ୍ରୀ ଫକୀର ଚରଣ ଭଞ୍ଜ
ଶ୍ରୀମତୀ ତୃପ୍ତିରାଣୀ ଭଞ୍ଜ

ଶ୍ରୀ ମିଶ୍ର ୧୯୬୮ରେ ଆଦର୍ଶ ଶିକ୍ଷକଭାବେ ରାଜ୍ୟ ସରକାରଙ୍କଠାରୁ ପୁରସ୍କାର ଲାଭ କରିଥିଲେ । ମି: ଇ: ସ୍କୁଲର ଛାତ୍ରାବାସରେ ହାଇସ୍କୁଲ ହେଉଛି ।

## ହଲଦିଆ ହାଇସ୍କୁଲ

ମଧ୍ୟ ବିଦ୍ୟାଳୟ ଗୃହରେ ତା ୧ । ୭ । ୧୯୫୮ରୁ ହାଇସ୍କୁଲ ପ୍ରତିଷ୍ଠିତ ହେଲା । ହାଇସ୍କୁଲ କାର୍ଯ୍ୟ ସକାଳେ ଓ ମଧ୍ୟ ବିଦ୍ୟାଳୟ କାର୍ଯ୍ୟ ମଧ୍ୟାହ୍ନରେ ହେଲା । ପ୍ରଥମ ପରୀକ୍ଷାର୍ଥୀମାନେ ୧୯୬୨ରେ ପରୀକ୍ଷା ଦେଲେ । ୧୯୬୪ରେ ମଞ୍ଜୁରୀଲାଭ କଲା । ୧୯୬୫ରୁ ସ୍ୱୀକୃତ; ୧୯୬୬ରୁ ୨/୩ଶଂ ଓ ୧୯୬୯ରୁ ପୂର୍ଣ୍ଣ ସାହାଯ୍ୟପ୍ରାପ୍ତ ଗ୍ରାଣ୍ଟ ଲାଭ କଲା । ୧୯୮୩ରୁ ଏକାଦଶ ଶ୍ରେଣୀ ବଦଳରେ ୩ ଶ୍ରେଣୀ ବିଶିଷ୍ଟ ହାଇସ୍କୁଲ ହେଲା । ୧୯୮୪ରେ ବିଦ୍ୟାଳୟର ରଜତଜୟନ୍ତୀ ଉତ୍ସବ ପାଳିତ ହେଲା ଓ ସ୍ମରଣିକା ପ୍ରକାଶ ପାଇଲା ।

### ପ୍ରଧାନଶିକ୍ଷକ ଗଣ :

ସ୍କୁଲ ଆରମ୍ଭ ୧ । ୭ । ୧୯୫୮

ଶ୍ରୀ ନୀଳକଣ୍ଠ ମିଶ୍ର—୮ । ୯ । ୫୮-୩୧ । ୮ । ୫୯

ଶ୍ରୀ ବିନୋଦ ବିହାରୀ ରାଜଗୁରୁ—୧ । ୯ । ୫୯-୧୨ । ୯ । ୬୬

ଶ୍ରୀ ଭଗବାନ ମହାନ୍ତି—୧୩ । ୯ । ୬୬-୧୭ । ୬ । ୮୦

ଶ୍ରୀ ଅବଧୂତ ଶତପଥୀ—୧୮ । ୬ । ୮୦ରୁ ଅଦ୍ୟାବଧି ।

ଶ୍ରୀ ଜାନକୀରାମ ଭଞ୍ଜ ପ୍ରାରମ୍ଭରୁ ସମ୍ପାଦକ ଅଛନ୍ତି । (ବସନ୍ତ ପଞ୍ଚମୀ) ୧୭ । ୨ । ୬୫ରୁ ହାଇସ୍କୁଲ ମଧ୍ୟ ବିଦ୍ୟାଳୟ ଗୃହାବାସରେ ହେଲା । ଖେଳପଡ଼ିଆକୁ ମିଶାଇ ଏ୪-୯୫୮ ଡି: ଜମି ବିଦ୍ୟାଳୟର ଅଛି । ବିଦ୍ୟାଳୟ ଗୃହଟି ଗଡ଼ ଓ କୁଆପୁଟ ମୌଜାର ସୀମାରେ ଅଛି । ସେହି ୧୭ । ୨ । ୬୫ରୁ ସକାଳ ବଦଳରେ ଦିବା ଶ୍ରେଣୀ କାର୍ଯ୍ୟ ଚାଲିଲା ୭ । ୬ । ୯୪ ଠାରୁ ସରକାରୀ ସ୍କୁଲ ହୋଇଛି ।

ତା ୨୨ । ୭ । ୬୫ ଗଡ଼ ମଧ୍ୟସ୍ଥ ଶ୍ରୀଚଣ୍ଡୀଙ୍କଠାରେ ବାଳିକା ମି: ଇ: ସ୍କୁଲଟିଏ ପ୍ରତିଷ୍ଠିତ ହେଲା । ମାତ୍ର ତା ୧୫ । ୭ । ୬୮ରେ ଏହା ବନ୍ଦ ହୋଇଗଲା । ସ୍କୁଲ କାର୍ଯ୍ୟ ଗଡ଼ ମହିଳା ସମିତି ଘରେ ହେଲା । ଶ୍ରୀମତୀ ସ୍ୱର୍ଣ୍ଣଲତା ପଟ୍ଟନାୟକ ପ୍ରଧାନଶିକ୍ଷୟିତ୍ରୀ, ଶ୍ରୀମତୀ ରେଣୁବାଳା ଓ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦାସ ସହକାରୀ ଶିକ୍ଷୟିତ୍ରୀ ଥିଲେ ।

ତା ୧୯ । ୯ । ୧୯୮୩ରୁ ହଳଦିଆ କଲେଜ ଏହି ସ୍କୁଲ ଅଞ୍ଚଳରେ ସ୍ଥାପିତ ହେଲା । ତା ୧୪ । ୩ । ୧୯୮୯ରେ ନୂତନ ଗୃହ

ତାଙ୍କୋଟନ (ଘଣ୍ଟାଆଟୋଷ୍ଟା)ରେ ଥିବା ସ୍ଥାୟୀ ଘରକୁ (୧୦ ଏକର) ସ୍ଥାନାନ୍ତରିତ ହେଲା । ଡାକ୍ତର ଶ୍ରୀ ଶରତଚନ୍ଦ୍ର ମିଶ୍ର ସମ୍ପାଦକ ଓ ଶ୍ରୀ ପ୍ରସନ୍ନ କୁମାର ମାଣ୍ଡଶାଣୀ ସଭାପତି । ଅଧ୍ୟକ୍ଷ ଶ୍ରୀ ବ୍ରହ୍ମାନନ୍ଦ ଭଞ୍ଜ ତା ୧୯।୯।୮୩ ରୁ ତା ୫।୭।୮୪। ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ସ୍ୱାଇଁ ତା ୭।୭।୮୪ରୁ ସଭାପତି ଓ ଶ୍ରୀ ଭଗବାନ ପ୍ରକାଶ କାର୍ଯ୍ୟକାରୀ ସଭାପତି ଥିଲେ । ପରେ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଏମ୍.ପି. ସଭାପତି ହେଲେ ।

## ହଳଦୀ କୃମି ନାଶକ

ସମଗ୍ର ଭାରତରେ ଚରକ୍ରା ଶାସ୍ତ୍ରରେ ଅତୁଳନୀୟ ଅବଦାନ ହଳଦିଆର ଶ୍ରୀ ସେଣ ମହାପାତ୍ର ସାଲ୍ଲଧାସ୍ଙ୍କର ଥିଲା । ଷୋଡ଼ଶ ଶତାବ୍ଦୀରେ ଖୋରଧାର ରଜା ମୁକୁନ୍ଦ ଦେବଙ୍କ ଅମଳରେ (୧୫୩୭–୬୮ ମଧ୍ୟରେ) ଶ୍ରୀ ବିଶ୍ୱନାଥ ସେଣ ମହାପାତ୍ର "ପଥ୍ୟାପଥ୍ୟ ବିନଶ୍ଚୟ" ନାମକ ଆୟୁର୍ବେଦୀୟ ଗ୍ରନ୍ଥ ରଚନା କରିଯାଇଛନ୍ତି । ଏଥିରେ କେଉଁ ଋତୁରେ କେଉଁ ଖାଦ୍ୟ ଖାଇବ ତାହା ବର୍ଣ୍ଣିତ ହୋଇଛି ।

କିମ୍ବଦନ୍ତୀରୁ ଜଣାଯାଏ ଯେ ହଳଦିଆର ସେଣ ବୈଦ୍ୟ ଲଙ୍କା ଯାଇ ରାକ୍ଷସରାଜ ବିଭୀଷଣଙ୍କୁ ଆରୋଗ୍ୟ କରିଥିଲେ । ଔଷଧ ଥିଲା ଲମ୍ବିକଡ଼ । ସେଥିପାଇଁ ସ୍ୱର୍ଣ୍ଣମଣି ପୁରସ୍କାର ପାଇଥିଲେ । ମାତ୍ର ଅନାବଶ୍ୟକ ମନେକରି ଫେରିବା ବେଳେ ତାହାକୁ ସମୁଦ୍ରରେ ନିକ୍ଷେପ କରିଥିଲେ ।

ଆଜି କେହି କେହି କହୁଛନ୍ତି ସେଣ ବୈଦ୍ୟ ତାଙ୍କର ଲଙ୍କା ଯାତ୍ରାର ନିଦର୍ଶନ ସ୍ୱରୂପ ହଳଦିଆର ସୁଗନ୍ଧ, ସୁମିଷ୍ଟ ଓ ଆଖିଲେଖା ଆମ୍ବ ଗୋରିବ ଆଣିଥିଲେ । ଏହି ପରିବାର "ମାଳୀ" । ସେଣଙ୍କ ପଡ଼ିଆ, ସେଣଙ୍କ ତୋଟା ଓ ସେଣଙ୍କ ବରଗଛ ଏହି ସ୍ମୃତି ଜାଗରୁକ କରୁଛି । ଏହିପରି ଏକ ସେଣ ପରିବାରର ପ୍ରତିଷ୍ଠା ଗୋଳବାଇର ମାଳୀ ଢିପରେ ଥିବାର ଜଣାଯାଏ । ସେ କି ବିଭୀଷଣଙ୍କୁ ଭଲ କରିବାକୁ ଲଙ୍କା ଯାଇଥିଲେ । ଉଭୟ ସେଣଙ୍କ ପରିବାରର ସମ୍ପର୍କ ଥିଲା, କି ଗୋଟିଏ ସ୍ଥାନରେ ରହିବା ପରେ ଅନ୍ୟଠାକୁ ସେଣ ପରିବାର ଯାଇଛନ୍ତି ତାହା ଅନୁଧ୍ୟାନ କରିବା ଆବଶ୍ୟକ । ଗୋଳବାଇ ମାଳୀଢିପରୁ ଏମାନେ ମାଳୀ ଥିବାର ଜଣାଯାଏ । ବଙ୍ଗାଳୀ ସେନ ବା ଖଣ୍ଡାୟତ ସେନ ନୁହନ୍ତି । ସେହିପରି "ସେଣା" ବା "ସୈନ୍ୟ" ଶବ୍ଦର ସେଣ ନୁହନ୍ତି ।

ବଣ ଜଙ୍ଗଲ ପୂର୍ଣ୍ଣ ହଳଦଆର ସ୍ୱାସ୍ଥ୍ୟ ପ୍ରାଚୀନ ପଦ୍ଧତି ଜଡ଼ିବୁଟି ଚେର ମୂଳରେ ସମ୍ପର୍କିତ ହୋଇଥିଲା । ବନ୍ଦୋବସ୍ତ ରିପୋର୍ଟରୁ ଜଣାଯାଏ ଯେ ୧୮୭୯ ବେଳକୁ ଭିଖ ଭଞ୍ଜ ଦେଶୀୟ ବୈଦ୍ୟ ଥିଲେ । ଏ ପୁରୁଣା ଗଡ଼ରେ ରହୁଥିଲେ । ଏହାଙ୍କ ପୁତ୍ର କପିଳଭଞ୍ଜ ପିତାଙ୍କ ପରି ଚିକିତ୍ସକ ଥିଲେ । ଶ୍ରୀ କପିଳଙ୍କ ଜୋଇଁ ଯାଜପୁରର ଶ୍ରୀ ଗୌରାଙ୍ଗ ପଟ୍ଟନାୟକ ଶ୍ୱଶୁର ଘର ପୋଥିରେ ବଳୀୟାର ହୋଇ ଆଦର୍ଶ ଚିକିତ୍ସକ ରୂପେ ଖ୍ୟାତି ଅର୍ଜନ କରିଥିଲେ ।

କୁଆପୃଷ୍ଠ ଗ୍ରାମର ଶ୍ରୀ ଚିନ୍ତାମଣି ଦାଶ ଓ ତାଙ୍କର ସନ୍ତାନ ଲିଙ୍ଗରାଜ, ପୀତବାସ, ବିଶ୍ୱନାଥ ଓ ମଧୁସୂଦନ ମଣିଷ ଏବଂ ପଶୁଙ୍କର ଆଖିରୋଗ ଭଲ କରୁଥିଲେ । ସେମାନେ ଅଞ୍ଜନ ତିଆରି କରୁଥିଲେ ।

ଉପରଗଡ଼ର ଶ୍ରୀ ରତ୍ନାକର ଭଞ୍ଜ, ଶ୍ରୀ ସାରଧର ଭଞ୍ଜ ଓ ଶ୍ରୀ ନାରାୟଣ ଭଞ୍ଜ ପରମ୍ପରା ନ୍ୟାୟରେ ଚିକିତ୍ସକ ଅଟନ୍ତି । ଶ୍ରୀ ମଧୁସୂଦନ ଭଞ୍ଜ କବିରାଜ ଥିଲେ ।

କୁଆପୃଷ୍ଠ ଗ୍ରାମର ଶ୍ରୀ ବେଣୁଧର ମହାନ୍ତି ଯୁଦ୍ଧରେ କମ୍ପାଉଣ୍ଡର ଥିଲେ । ଅବସର ପରେ ଗାଁରେ ଚିକିତ୍ସା କଲେ । ତାଙ୍କୁ ଲୋକେ ଡାକ୍ତର ବୋଲି ଡାକୁଥିଲେ ।

ଏଠାରେ ଲୋକେ କହନ୍ତି—

ମଧୁ କରିବାକୁ ମଧୁ ବଇଦ
ଘା' ଫୋଡ଼ା ରତ୍ନାକର
ସବୁଠାରୁ ଭଲ ପରମାନନ୍ଦ
ପାଣିହଆ ଡାକ୍ତର ।

ପଳାଶୁଣିର ଶ୍ରୀ ନିତ୍ୟାନନ୍ଦ ଓ ସାମନ୍ତରାପୁରର ଶ୍ରୀ ପରମାନନ୍ଦ ମିଶ୍ର, ଶ୍ରୀ ବାଞ୍ଛାନିଧି ମିଶ୍ର କବିରାଜଗିରି କରୁଥିଲେ । କୁଷ୍ଠରୋଗ ନିୟନ୍ତ୍ରଣ ସମିତି ହଳଦଆ ହାଟ ଛକଠାରେ ଏକ କୁଷ୍ଠାଶ୍ରମ ହୋଇଥିଲା । ୧୯୪୦—୪୪ ମଧ୍ୟରେ ସକ୍ରିୟ ଥିଲା ।

## ଦାତବ୍ୟ ଆୟୁର୍ବେଦ ଚିକିତ୍ସାଳୟ

ହଇଜା ଓ ଗାଳଧୁଆ ପତ୍ର ବାଟି ପିଇଲେ କୃମି ମରନ୍ତି । ୧୯୫୦-୧୯୭୭ ପର୍ଯ୍ୟନ୍ତ ଏକ ଦାତବ୍ୟ ଆୟୁର୍ବେଦ ଚିକିତ୍ସାଳୟ ସତ୍ୟସ୍ୱର୍ଗ ବିହାର ସନ୍ନିକଟରେ କାର୍ଯ୍ୟ କରିଥିଲା ।

କବିରାଜ ଗଣ—ଶ୍ରୀ ନନ୍ଦକିଶୋର ମିଶ୍ର—ଗୁ ଚ୍ଛଜଙ୍ଗ
ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାପାତ୍ର—ଓସଣା
ଶ୍ରୀ ଅନନ୍ତ ଚରଣ ପରମଗୁରୁ—
ଶ୍ରୀ ନୀଳକନାଥ ମିଶ୍ର—ଭଗବାନପୁର ଶାସନ

### ସେଣ ବୈଦ୍ୟ ବିହାର :

ବିଥ ପାଚିବାକୁ ବିଟା ହଇଜା ଲଗାନ୍ତି । ଚିକିତ୍ସାର ଏହିସବୁ ଭିତ୍ତିଭୂମିରେ ସର୍ବାଧୁନିକ ଚିକିତ୍ସା ପାଇଁ ସର୍ବୋଚ୍ଚ ଚିକିତ୍ସାଳୟ, ପ୍ରାଥମିକ ଚିକିତ୍ସା କେନ୍ଦ୍ର ୧୯୬୪ରେ ହଳଦିଆରେ ଖୋଲାଗଲା । ପ୍ରଥମେ ପୁରୁଣା ଗଡ଼ରେ ଡାକ୍ତରଖାନା ଅସ୍ଥାୟୀ ଭାବେ (ବିପିନ ଭଞ୍ଜଙ୍କ) ଖୋଲାଗଲା । ୧୯୬୫ରୁ ଘନଆ ତୋଟା, ଯେଉଁଠାରେ ହରିଡ଼ା ଓ ବାହାଡ଼ା ଗଛ ଧାଡ଼ି ଏକତ୍ରିତ ରହି ଚିକିତ୍ସା କ୍ଷେତ୍ର ପାଇଁ ଆହ୍ୱାନ ଦେଉଥିଲେ, ସେଠାରେ ସ୍ଥାୟୀ ସ୍ଥାନ ହେଲା । ଏହା ସେଣ ବୈଦ୍ୟ ବିହାର ରୂପେ ପରିଚିତ ହେଉଛି ।

ଭଗବାନପୁର ଶାସନର ବ୍ରାହ୍ମଣ ମହାଜନମାନଙ୍କ ଗୃହନିର୍ମାଣ ପାଇଁ ଆବଶ୍ୟକ ଅର୍ଥର ଅର୍ଜନ ଦାନରେ (ସାଧାରଣ ଦାନ) ଡାକ୍ତରଖାନା ହେଲା । ବଦାନ୍ୟ ମହାଜନମାନେ ଚାଉଳ ଧାନସହ କ୍ଷେତ୍ର ବିକ ଯଥାସମୟରେ ଟଙ୍କା ଦେଇ ଦାନର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

ସ୍ଥାନୀୟ ଜନତା ଓ ସରକାର କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏହି କେନ୍ଦ୍ରକୁ "ଭଗବାନପୁର ଶାସନ ପ୍ରାଥମିକ ଚିକିତ୍ସା କେନ୍ଦ୍ର" ନାମରେ ନାମିତ କରିଛନ୍ତି । ବିଦେଇ ଠାକୁର ଶ୍ରୀ ବାନାମ୍ବର ସାହୁଙ୍କ ହତା ମଧ୍ୟରେ ଏକ ପ୍ରସୂତି ଭବନ ନିର୍ମାଣ କରାଇ ଅଛନ୍ତି । ଏଠାରେ ଏକ ଧାଇ ତାଲିମ କେନ୍ଦ୍ର ପରିଚାଳିତ ହେଉଛି ।

ଡାକ୍ତରଗଣ—ଶ୍ରୀ ସୁଧୀର କୁମାର କୁଣ୍ଡୁ

ଶ୍ରୀ ସୁରେନ୍ଦ୍ର ନାଥ ଶ୍ରେଷ୍ଠବସୁ

ଶ୍ରୀ ଦିବ୍ୟସିଂହ ମିଶ୍ର

ଶ୍ରୀ ଶତପଥୀ

ଶ୍ରୀ ପ୍ରକାଶ ମହାପାତ୍ର

ଶ୍ରୀ ବିପିନ ବିହାରୀ ପଟ୍ଟନାୟକ

ପ୍ରକାଶ ଥାଉକି ସମଗ୍ର ଖୋର୍ଦ୍ଧା ବ୍ଳକର ଏହା ପ୍ରାଥମିକ ଚିକିତ୍ସା କେନ୍ଦ୍ର । ଏ ଅନୁଷ୍ଠାନଟି ବ୍ଳକର ଉତ୍ତର ପ୍ରାନ୍ତରେ ରହିଛି ।

## ଭଗବାନପୁର ଶାସନ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର

Office of the Civil Surgeon, Puri

No——, dated Puri the th February 69

To

The Medical Officer I/C
Bhagabanpur Shasan P. H. Centre

Sub—Change of name of Haladia P. H. C. to Bhagabanpur Shasan P. H. C.

The Official Seal of Haladia P. H. Centre may please be Changed as BHAGABANPUR SHASAN Primary Health Centre.

-Sd-
Civil Surgeon Puri

Memo No/958 ES&E Dated Puri the 11-2-69 Copy Forwarded to Sri Alekha Dash, B.A.,B.Ed. Bhagabanpur Shasan for Information. He is allowed to set Marble Stone containing the mark of PHC as Bhagabanpur Shasan Primary Health Centre at his own cost.

Sd/ Illegible
Civil Surgeon, Puri

ବସନ୍ତ ରୋଗପରେ ଘା' ଜନିତ କ୍ଷତିପୂରଣ କରେ ନିମ୍ବପତ୍ର ଓ ହଳଦୀ

## ବୃଦ୍ଧବାମନଙ୍କ ମୂର୍ତ୍ତି ବନ୍ଧା ହଳଦୀରେ ନିର୍ମାଣ କରାଯାଏ

ଶ୍ରୀ ଶ୍ରୀ ବାଲୁଙ୍କେଶ୍ୱର ଦେବ—ସ୍ମରଣାତୀତ କାଳରୁ ହଳଦିଆର ପ୍ରାଚୀନ ଶିବ ପୂଜା ସ୍ଥଳୀ । ପ୍ରଥମେ ଏଠାରେ ଏକ କୁଳଘରେ ମଣ୍ଡପରେ ଦେବତା ଥିଲେ । ବ୍ରାହ୍ମଣମାନେ ଏକ ମନ୍ଦିର କଲେ ଓ ୧୯୪୦ରେ ପ୍ରତିଷ୍ଠା କଲେ ।

**ବିଅଁ ବିଭା :**

ଭରଦ୍ୱାଜ ଗୋତ୍ରଧାରୀ ଶ୍ରୀ କୃପାସିନ୍ଧୁ ମିଶ୍ର ପୁତ୍ର କାମନା କରି ତିନିପୁତ୍ର ବାଲୁଙ୍କ, ଚନ୍ଦ୍ରଶେଖର, ମହେଶ୍ୱର ଓ ଆନନ୍ଦ ଲାଭ କଲେ । ବିଅଁ ବିଭା ଉତ୍ସବ ତାଙ୍କଠାରୁ ଆରମ୍ଭ । ଶିବପାର୍ବତୀ ବିବାହ ପରେ ବ୍ରାହ୍ମଣଭୋଜନ ହୁଏ । ଏଥିପାଇଁ ସ୍ଥାୟୀ ବୃତ୍ତି ଥିଲା । ଏବେ ବ୍ୟାଙ୍କରେ ଜମାଥିବା ଟଙ୍କାର ସୁଧରେ ପର୍ବ ହେଉଛି ।

**ଚନ୍ଦନ ଯାତ୍ରା :**

ଶ୍ରୀ ମଧୁସୂଦନ ଦାଶ ପୁତ୍ରକାମନା କରି ସଫଳ ହେଲେ । ଠାକୁରଙ୍କ ୨୧ଦିନ ଚନ୍ଦନ ଲାଗି ଓ ନୈବେଦ୍ୟ ପଂକ୍ତିଭୋଜନ ପାଇଁ ଜମି ଖଞ୍ଜିଛନ୍ତି । ୧୯୩୫ରୁ ଏ ବିଧି ପାଳନ କରାଯାଉଛି । ଠାକୁର ମଣ୍ଡପରେ ବା କୋଠାଘରେ ନିତି ପାଆନ୍ତି ।

**ସାଗର :**

ଶ୍ରୀ ଗଦାଧର ମିଶ୍ର ମାନସିକ କରି ଫଳ ପାଇ ୧୯୨୪ରୁ ଜମି ଖଞ୍ଜି ଥିବାରୁ ଏହି ପର୍ବ ପାଳନ କରାଯାଉଛି ।

**ଝାମୁଯାତ୍ରା :**

ପଣାସଂକ୍ରାନ୍ତି ଦିନ ବାଲୁଙ୍କେଶ୍ୱରଙ୍କଠାରେ ଝାମୁ ହୁଏ । ପଣା ବିତରଣ କରାଯାଏ ।

**ବାଗ :**

ବାଲୁଙ୍କେଶ୍ୱରଙ୍କ ସାମନା ପଡ଼ିଆ ବାଗ । ଏଥିରେ କସ୍ତୁରୀ ଓ କଇଁଥ ଗଛମାନ ଅଛି । ମଝିରେ ଏକ କୁଣ୍ଡମୀ ଓ ସମାଧି ଅଛି । ଜଣେ ସନ୍ୟାସୀଙ୍କର ସ୍ମୃତିରେ ସମାଧି ହୋଇଛି ।

**ଶ୍ରୀ ଶ୍ରୀ ପ୍ରସନ୍ନମଣି :**

ରଣପୁର ରଜା ଓ ବାଙ୍କି ରଜାଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହୁଏ । ରଣପୁର ରଜା ହଳଦିଆ ରଜାଙ୍କ ସାହାଯ୍ୟ ଲୋଡ଼ିଲେ । ହଳଦିଆର ଗୋପିନାଥ ରଥ ଓ ଅନ୍ୟ ସାତଜଣ ଯୋଦ୍ଧା ରଣପୁର ଗଲେ । ବାଟରେ କଅାବୁଦା ମଧ୍ୟରେ ଠାକୁରଙ୍କ ଦର୍ଶନ ପାଇଲେ । ଅତି ଆଗ୍ରହରେ ବିଗ୍ରହ ସ୍ପର୍ଶ କଲେ ଓ ଉଠାଇବାକୁ ଚେଷ୍ଟା କଲେ । ସମସ୍ତ ଯୋଦ୍ଧାଙ୍କର ବଳ ପରାସ୍ତ ହେଲ । ପରଦିନ ଭକ୍ତଙ୍କ ମନୋବାଞ୍ଛା ପୂରଣ କରି ପ୍ରସନ୍ନ ହୋଇ ଠାକୁର ହାଲୁକା ହେଲେ । ପ୍ରସନ୍ନମଣି ବୋଲାଇଲେ । ହଳଦିଆ ଅଣାଗଲେ ।

ପ୍ରସନ୍ନମଣି, ଚୈତନ୍ୟ, ପତିତପାବନ ଭଜନମୂର୍ତ୍ତି ଓ ଲକ୍ଷ୍ମୀ ନାରାୟଣ ଏଠାରେ ଅବସ୍ଥାନ କଲେ ମଧ୍ୟ ପ୍ରସନ୍ନମଣି ହିଁ ପୀଠ ଦେବତା । ଠାକୁରଙ୍କ ପାର୍ଶ୍ୱରେ ଏକ ଦାଉଁଶକଳୀରେ ମୂର୍ତ୍ତି ମୁଦା ହୋଇଛନ୍ତି । ସେ ହଇଜାରୁ ରକ୍ଷା କରନ୍ତି । ପୁରୁଣାଗଡ଼ବାସୀ କହନ୍ତି ଠାକୁରଙ୍କ ଅନୁଗ୍ରହରୁ ସେଠାରେ ହଇଜା ହୋଇନାହିଁ ।

ପ୍ରସନ୍ନମଣିଙ୍କ ବଳେ ପ୍ରଥମ ଭୁଟେଇ ଖାଉଥିଲେ । ୧୯୨୮ ପ୍ରଜା ଆନ୍ଦୋଳନ ବେଳୁ ତାହା ବନ୍ଦ ହେଲ । ଦେବସ୍ନାନ ମଣ୍ଡପଠାରେ ଠାକୁରଙ୍କ ସ୍ନାନ ଦର୍ଶନୀୟ । ରଜପରିବାରର ଅଭିଷେକ ପରେ ଠାକୁର ଦର୍ଶନ ଏଠାରେ ହୁଏ ।

**ରଘୁନାଥ :**

ରଜା ପୀତବାସ ଅନ୍ୟାନ୍ୟ ରଜାଙ୍କ ଢାଞ୍ଚାରେ ନିଜ ବାସଭବନ ଆଗରେ ମନ୍ଦିର ନିର୍ମାଣ କଲେ । ମନ୍ଦିର ୧୯୧୪ରୁ ଆରମ୍ଭ ହେଲ । ଶ୍ରୀ ଶ୍ରୀ ରଘୁନାଥ ଦେବ ପ୍ରତିଷ୍ଠା ହେଲେ ୧୯୧୮ରେ । ଏଠାରେ ଶ୍ରୀ ଶ୍ରୀ ବିଶ୍ୱନାଥଙ୍କ ମନ୍ଦିର ଅଛି ।

**ଶ୍ରୀ ଶ୍ରୀ ମଦନ ମୋହନ :**

ଶ୍ରୀ ଭଗବାନ ଭଞ୍ଜ ୧୯୨୦ରେ ନିଜ ବାସଭବନ ନିକଟରେ ମନ୍ଦିର କରି ଶ୍ରୀ ଶ୍ରୀ ମଦନ ମୋହନଙ୍କୁ ବିଜେ କରାଇଲେ ।

**ବ୍ରାହ୍ମଣବେରଣୀ :**

ଧର୍ମପ୍ରାଣ ଶ୍ରୀ ଜଗନ୍ନାଥ ଲେଙ୍କା ୧୯୪୪ରେ ନିଜ ଗ୍ରାମରେ ମନ୍ଦିର ନିର୍ମାଣ କଲେ । ୧୯୬୮ରେ ତାଙ୍କର ସୁଯୋଗ୍ୟ ସନ୍ତାନମାନେ (ନରସିଂହ,

ଶେଷଦେବ, ରାଘବ, ନବକିଶୋର, ପୂର୍ଣ୍ଣଚନ୍ଦ୍ର) ଠାକୁର ପ୍ରତିଷ୍ଠା କଲେ । ୧୯୬୮ରେ ପୁରୀ ଗଜପତି ଶ୍ରୀ ବୀରକିଶୋର ଦେବଙ୍କ ଉପସ୍ଥିତିରେ ହୋଇଥିଲା । ପାର୍ବଦନ ଧଣ ଠାକୁର ପ୍ରଧାନମଣିଙ୍କଠାରେ ପୂଜା ପାଉଥିଲେ । ମନ୍ଦିର ପ୍ରତିଷ୍ଠା ପରେ ଶ୍ରୀ ରାଧାମୋହନ ପୂଜା ପାଇଲେ ।

ନୟସାହିରେ ଏକ ଖୁଲଘରେ ଠାକୁର ଶ୍ରୀ ଶ୍ରୀ ନୀଳକଣ୍ଠେଶ୍ୱରଙ୍କ ଆସ୍ଥାନ । ୧୯୮୦ରୁ ଗୋଟିଏ ନୂତନ ମନ୍ଦିରରେ ଠାକୁର ବିଜେ ହୋଇଛନ୍ତି ।

## ବସନ୍ତ :

ଶ୍ରୀ ଶ୍ରୀ ଲୋକନାଥ ଦେବ ବିଜେ ବସନ୍ତ । ଏହାଙ୍କ ମନ୍ଦିର ୧୯୪୪ରେ ପ୍ରତିଷ୍ଠା ହୋଇଛି । ପ୍ରସିଦ୍ଧ ସୋରଡ଼ା ପୋଖରୀ ଠାକୁର ମନ୍ଦିରକୁ ଲାଗି ରହିଛି ।

## ଚୈତ୍ର ଶିବ :

ହଳଦିଆରେ ଶ୍ରୀ ଶ୍ରୀ ବାଲ୍ମୀକେଶ୍ୱର, ଶ୍ରୀ ଶ୍ରୀ ନୀଳକଣ୍ଠ, ଶ୍ରୀ ଶ୍ରୀ ଲୋକନାଥ ଓ ଶ୍ରୀ ଶ୍ରୀ ବିଶ୍ୱନାଥ ଚୈତ୍ର ଶିବ ମୂର୍ତ୍ତି ଦୋଳ ଚୈତେଶ୍ୱ ବେଳେ ଗୋଟିଏ ବିମାନରେ ଯାଇଥାଆନ୍ତି । ଯାତ୍ରା ଉଆମଠାରୁ ଆରମ୍ଭ ହୁଏ ।

ଏତଦ୍‌ବ୍ୟତୀତ ପ୍ରାଚୀନ ଦେବତା, ଡାକଖାଇ ବାଉଳୀ, ଚଣ୍ଡୀ, ବାଟଚଣ୍ଡୀ, ରକ୍ତନେଇ, ମଙ୍ଗଳା ଇତ୍ୟାଦିଙ୍କ ଇତିହାସ ଅତି ପ୍ରାଚୀନ । ଅଲେଖା ରହିଛି । ପାଠକମାନେ ଅନୁସନ୍ଧିତ୍ସୁ ହେବାକୁ ଚେଷ୍ଟା କରନ୍ତୁ । କାଳିଆବାଉଳୀ ଶ୍ରୀ ମଙ୍ଗଳା ସ୍ୱାଇଁ ଦେଣ୍ଡେଇ ସାହିଙ୍କଠାରେ ପ୍ରସନ୍ନ ହୁଅନ୍ତି । ତାଙ୍କର ଭବିଷ୍ୟତ ବାଣୀ ସତ୍ୟ ପ୍ରମାଣିତ ହୁଏ । ବିଶେଷତଃ ବର୍ଷା କେବେ ହେବ । ଭବିଷ୍ୟତବାଣୀ କରୁଥିଲେ ।

## ଶ୍ରୀ ଶ୍ରୀ କାଳୀ ଠାକୁରାଣୀ

ଶାସନର ଶ୍ରୀ ଲିଙ୍ଗରାଜ ମିଶ୍ର ଓ ଶ୍ରୀ ଭୁବନ ମିଶ୍ରଙ୍କ ଉଦ୍‌ଯୋଗ ଓ କୁଆପୁଟର ଶ୍ରୀ ବିଦ୍ୟାଧର ସାହୁ (ଗୁଡ଼ିଆ) ଙ୍କ ସ୍ୱାମୀଭକ୍ତିର ନିଦର୍ଶନ ହେଉଛି କାଳୀ ମନ୍ଦିର । ମୂର୍ତ୍ତି ଖୋଦନ କଲେ ଶ୍ରୀ ହଳଧର ମହାପାତ୍ରଙ୍କ ପୁତ୍ର ବାଉରୀବନ୍ଧୁ—ଶିଳ୍ପକାର ପୁରୁଣାଗଡ଼ । ଏଠି ବଳୀପ୍ରଥା ଚଳେ । ଶ୍ୟାମାପୂଜା ଦେବୀଙ୍କର ପର୍ବ ।

**କାମନା ଘର :**

କୁଆପୁଟ, ବସନ୍ତ ଓ ବ୍ରାହ୍ମଣବେରଣୀରେ କାମନା ଘରମାନ ନିର୍ମିତ ହୋଇଛି । ଦଣ୍ଡୁଆମାନେ ପଣା ସଂକ୍ରାନ୍ତି ବେଳେ ଉପବାସ କରନ୍ତି । ଦଣ୍ଡ ନାଚନ୍ତି । ଯାତ୍ରା କରନ୍ତି ।

ସମସ୍ତ ଶୁଭକାମରେ ହଳଦିଆ ଅକ୍ଷତ ଆବଶ୍ୟକ । ଦ୍ୱାରରେ ଓ ଚାଳରେ ଓ ଘର କାନ୍ଥରେ ହଳଦୀରେ ଚିହ୍ନ କରାଯାଏ ।

## ସମବାୟ ସମିତି

ହଳଦିଆ ସେବା ସମବାୟ ସମିତି ୧୯୨୦ରୁ କାର୍ଯ୍ୟ କରୁଛି । ଏହା ଖୋର୍ଦ୍ଧା କେନ୍ଦ୍ର ସମବାୟ ବ୍ୟାଙ୍କର ଏକ ଶାଖା ଅଟେ । କେବଳ ଋଣ ଦେବା କାର୍ଯ୍ୟ ବଦ୍ଧିତ ଚାଲିଦା ପରେ ଏବେ ସାର ଯୋଗାଣ, କଣ୍ଟ୍ରୋଲ ଜିନିଷ ଯୋଗାଣ ଇତ୍ୟାଦି ବ୍ୟବସାୟ ଚାଲିଛି । ନିଜର ଖଣ୍ଡିଏ ଚାଳଘର ଥିଲା । ଏବେ ତାହା କୋଠାରେ ପରିଣତ ହୋଇଛି ।

**ସମ୍ପାଦକ ଗଣ :**

ଶ୍ରୀ ଗଦାଧର ମିଶ୍ର
ଶ୍ରୀ ଦୟାନିଧି ମିଶ୍ର
ଶ୍ରୀ କୃଷ୍ଣମୋହନ ଭଞ୍ଜ
ଶ୍ରୀ ନାରାୟଣ ଚନ୍ଦ୍ର ଭଞ୍ଜ

**ପଢ଼ାଘର :**

କୁଆପୁଟ, ଗଡ଼ହଳଦିଆ, ବସନ୍ତ, ବ୍ରାହ୍ମଣବେରଣୀ ଓ ହାଟସାହି ।

## ଯୋଗାଯୋଗ

ହଳଦିଆ ପୂର୍ବେ ଚର୍ଚ୍ଚିକା (କଟକ ଜିଲ୍ଲା) ଡାକ ଘର ଅଧୀନରେ ଥିଲା । ପରେ ଖୋରଧା, କେରଙ୍ଗ ଡାକଘର ଜରିଆରେ ଚିଠିପତ୍ର ଆସିଲା । ତା ୨୭ । ୨ । ୧୯୪୮ରେ ହଳଦିଆ ଡାକଘର ଖୋଲାଗଲା । ପ୍ରଥମାବସ୍ଥାରେ ଡାକଘର କାର୍ଯ୍ୟ ହଳଦିଆ ଗଡ଼ ଭଞ୍ଜଙ୍କ ଘରେ ଚାଲିଲା । ପରେ ଗଡ଼ ମଧ୍ୟକୁ ଉଠାଇ ନିଆଗଲା । ତା ୭ । ୧୦ । ୬୮ରୁ ବ୍ରାଞ୍ଚ୍ ଅଫିସ ଉଦ୍‌ଘାଟିତ ହେଲା । ଏହା ଇ. ଡି. ଏସ୍. (Extra-Department Service)ରେ ପରିଣତ ହେଲା ତା ୨ । ୨ । ୬୯ରୁ ।

ଏଠାରୁ ଚିଠିମୁଣି ସିଧା R. M. S.କୁ ଯାଉଛି । ଡାକଘରଟିର ପିନ୍‌କୋର୍ଡ୍ ୭୫୨୨୦୧ । ଏବେ ବସନ୍ତ ମୌଜା ବଡେଇଟାଙ୍ଗି ଡାକଘରକୁ ସଂଯୁକ୍ତ ହୋଇଛି । ହଳଦିଆ ଡାକଘରର ନିଜର ଘର ନାହିଁ । ଏକ ସାଧାରଣ ଜାଗାରେ ଡାକଘର ଖୋଲିବା ଦରକାର । ହାଟଠାରୁ ସ୍କୁଲ ମଧ୍ୟରେ ଡାକଘର ରହିବା ଉଚିତ ।

**ପୋଷ୍ଟମାଷ୍ଟର ଗଣ :**

ଶ୍ରୀ ମୁସ୍ତାଇବ ଖାଁ ୨୭ । ୨ । ୪୮-୧୯୫୦
ଶ୍ରୀ ମାନମଣି ଭଞ୍ଜ ୧୯୫୦-୨୩ । ୧ । ୭୩
ଶ୍ରୀ ବଚଖାନନ୍ଦ ଭଞ୍ଜ ୨୪ । ୧ । ୭୩ରୁ ଅଦ୍ୟାବଧି ।

## ଡାକବଙ୍ଗଳା

ଡାଙ୍କୀ ତଳେ ମୁକ୍ତାପୁର ଦିଗକୁ ଏକ ସରକାରୀ ଡାକବଙ୍ଗଳା ଥିଲା । ଖୋରଧାର ଦକ୍ଷିଣକୁ ଜଙ୍କିଆ ଓ ଉତ୍ତର ପୂର୍ବକୁ ଛଡାବରରେ ଏବେ ବି ଏପରି ସରକାରୀ ବାସସ୍ଥଳୀ ଅଛି । ହଳଦିଆ ଡାକବଙ୍ଗଳାଟି ନଷ୍ଟ ହୋଇଛି ।

## ଗ୍ରାମପଞ୍ଚାୟତ

୧୯୫୮ରୁ ହଳଦିଆଗଡ଼ ଗ୍ରାମପଞ୍ଚାୟତ କାର୍ଯ୍ୟ କରୁଛି । ବଡେଇଟାଙ୍ଗ ଓ ବାଲିସାହି ମୌଜା ହସ୍ତକୁ ନେଇ ହଳଦିଆ ୫ ମୌଜା ସହ ଏହାର ବିସ୍ତାର ।

**ସରପଞ୍ଚ ଗଣ :**

ଶ୍ରୀ ଜାନକୀରାମ ଭଞ୍ଜ
ଶ୍ରୀ ଗଙ୍ଗାଧର ଭଞ୍ଜ
ଶ୍ରୀ ଶେଷଦେବ ଲେଙ୍କା
ଶ୍ରୀ ବଟକୃଷ୍ଣ ଭଞ୍ଜ
ଶ୍ରୀ ସୁଦର୍ଶନ ସାହୁ
ଶ୍ରୀ ମାଧବଚନ୍ଦ୍ର ବରାଡ଼
ଶ୍ରୀ ସୁରେନ୍ଦ୍ର କୁମାର ଭଞ୍ଜ

## ଶ୍ମଶାନ

ମଲା ପରେ ସମସ୍ତେ ସମାନ (ହି ସମସ୍ତଙ୍କର ଗୋଟିଏ ଜାଗାରେ ଶବ ସତ୍କାର ପ୍ରଥା ହଳଦିଆରେ ଶୂନ୍ୟ । ଏଠାକାର ଶ୍ମଶାନରେ ବହୁ ଅହମିକା ଭରି ରହିଛି । ବ୍ରାହ୍ମଣମାନେ କୁଆପୁଟ ମୌଜାରେ ତାଙ୍କ କୋଠ ସ୍ଥାନରେ ଶ୍ମଶାନ କରିଛନ୍ତି । ଏହା ବାଲ୍ମୀକୀଶ୍ବର ମନ୍ଦିରର ପୂର୍ବ ଦେଶରେ ଅଛି । କ୍ଷତ୍ରୀୟମାନେ ଗଡ଼ ମୌଜାରେ ଅଲଗା ସ୍ଥାନ ସଂରକ୍ଷଣ କରିଛନ୍ତି । ସେଠାରେ କେତେକ ସ୍ମୃତି ସ୍ତମ୍ଭ ଗଢ଼ି ଉଠିଛି । ରାଜପରିବାର ନିମସାହି ନିକଟସ୍ଥ ନୀଳକଣ୍ଠେଶ୍ବର ମନ୍ଦିର ପଶ୍ଚାତ୍‌ଭାଗରେ ଏକ ନିବେଳା ରାଜ ପରିବାର ଶବସତ୍କାର ସ୍ଥାନ କରାଇଛନ୍ତି । ବାଉରି, ଶଅର, ହାଡ଼ି ଓ ଅନ୍ୟ ପ୍ରତ୍ୟେକ ଜାତି ପାଇଁ ବିଭିନ୍ନ ସ୍ଥାନ । ଏଥିପାଇଁ କୁଆ ପୋଖରୀର ଉତ୍ତରରେ ପାଟଣା ଗାଁର ଓ ଦକ୍ଷିଣରେ ବାଉରି ଶ୍ମଶାନ ଅଛି । ବାଉରି ଶଅର ଏବେବି ପୋତା ଯାଉଛନ୍ତି ।

## ଆର. ଆଇ. ଅଫିସ

୧୯୫୩ରୁ ଓଡ଼ିଶାର ସରକାର ହଳଦିଆ ଜମିଦାରୀ ଉଚ୍ଛେଦ କଲେ । ହଳଦିଆବାସୀ, ଖୋରଧା, ବାଘମାରି ଓ ମୁକ୍ତାପୁର ପ୍ରଭୃତିରେ ରାଜସ୍ୱ ଦାଖଲ କରି ୨୭ । ୭ । ୭୪ରୁ ହଳଦିଆରେ ପ୍ରତିଷ୍ଠିତ ତହସୀଲ ଅଫିସରେ ଖଜଣା ଦେଲେ । ଏହି ମଣ୍ଡଳ ଅଧୀନରେ ୨୮ଟି ମୌଜା ସାମିଲ ହୋଇଛି ।

- ବଡ଼ ଭୁଲସୀପୁର
- ସାନ ଭୁଲସୀପୁର
- ବସନ୍ତ
- କୁଆପୁଟ
- ହାଟ ସାହି
- ହଳଦିଆଗଡ଼
- ବ୍ରାହ୍ମଣବେରଣୀ
- କୁମ୍ଭିଲ
- ବାଲିସାହି
- ବଢେଇଟାଙ୍ଗି
- ବୈଁକୁଣ୍ଡିଆ
- ନିଆଳ
- ମଲପୁର
- ଚମ୍ପାପୁର
- ମହାରଥୀପୁର
- ହୋସେନପୁର
- ଠାକୁରପଡ଼ା
- ହର୍ଷସିଂହ ପ୍ରସାଦ
- କେରଙ୍ଗ
- ପାଇକତିଗିରିଆ

ତରକାଇ — ଟାଙ୍ଗିଆପଡ଼ା
ମୁକ୍ତାପୁର — କୁଣ୍ଡିଲ
ନୂଆପଡ଼ା
ପୋଡ଼ାପୁଟ — ହଳଦିଆପଡ଼ା

ତା ୭ । ୭ । ୯୫ରେ ଉତ୍ତମ ଅଫିସ ଗୃହ ନିର୍ମାଣ ହୋଇଛି ।

## ରାଜସ୍ୱ ନିରୀକ୍ଷକ ଗଣ :

| | |
|---|---|
| ଶ୍ରୀ ନାରାୟଣ ଦ୍ୱୋଡା | ୨୭ । ୭ । ୬୪—୨୮ । ୧୧ । ୬୫ |
| ଶ୍ରୀ ପ୍ରଫୁଲ୍ଲ କୁମାର ମହାପାତ୍ର | ୨୮ । ୧୧ । ୬୫—୭ । ୭ । ୬୯ |
| ଶ୍ରୀ ଯଦୁମଣି ନାଏକ | ୧୫ । ୭ । ୬୯—୧୪ । ୭ । ୭୧ |
| ଶ୍ରୀ ବଂଶୀଧର ପ୍ରଧାନ | ୧୪ । ୭ । ୭୧—୩୧ । ୭ । ୭୮ |
| ଶ୍ରୀ ଲକ୍ଷ୍ମୀଧର ସାହୁ | ୧୦ । ୮ । ୭୯ |
| ଶ୍ରୀ ଦୟାନିଧି ପୃଷ୍ଟି | ୭ । ୧୦ । ୮୨ |
| ଶ୍ରୀ ଦୁଃଖିଶ୍ୟାମ ବଣପଲ | |
| ଶ୍ରୀ ହରମୋହନ ପଟ୍ଟନାୟକ | |
| ଶ୍ରୀ ପୂର୍ଣ୍ଣଚନ୍ଦ୍ର ଜେନା | |
| ଶ୍ରୀ ନଳିନୀକାନ୍ତ ପଟ୍ଟନାୟକ | ୨୭ । ୮ । ୯୦ |
| ଶ୍ରୀ ରାମଚନ୍ଦ୍ର ନାୟକ | ୨୪ । ୮ । ୯୨ |
| ଶ୍ରୀ କେଳୁଚରଣ ବେହେରା | ୧୯ । ୩ । ୯୩ |
| ମହମ୍ମଦ ମମତାଜ୍ ହୋସେନ୍ | ୪ । ୭ । ୯୫ |

## ହାଟ, ବାଟ, ନାଟ, ବଟ

୧୯୭୦-୭୧ଠାରୁ ଡମପଡ଼ା, ଖୋରଧା ଓ ତୁଳସୀପୁର ରାସ୍ତା ଛକରେ ହଳଦିଆ ହାଟ ହୋଇଛି । ତତ୍କାଳୀନ ସରପଞ୍ଚ ଶ୍ରୀ ଶେଷଦେବ ଲେଙ୍କା ଏହାକୁ ଆରମ୍ଭ କରାଇଥିଲେ । ହାଟ ମଙ୍ଗଳବାର ଓ ଶନିବାର ଦିନ ହୁଏ । ହାଟଟି ଉପରବେଳା ବସେ । ଗୁରୁଦିଗକୁ ଯିବାକୁ ହାଟ ସ୍ଥାନର ବାଟ ପ୍ରସିଦ୍ଧ । ସ୍ଥାନଟି ଗୁରୁଗୋଟି ରାସ୍ତାର ଛକ । ଏଠାରେ ଯାତ୍ରାଦଳ ନାଟ କରନ୍ତି । ଛକଟିରେ ଏକ ମହାଦ୍ରୁମ ବଟବୃକ୍ଷ ରହି ଛାୟା ଧାରଣ କରୁଅଛି ।

## ପଶୁ ଚିକିତ୍ସା କେନ୍ଦ୍ର

୮ । ୨ । ୧୯୫୮ରୁ ପଶୁଚିକିତ୍ସା କେନ୍ଦ୍ରଟି ହଳଦିଆରେ ସ୍ଥାପିତ ହେଲା । ସମବାୟ ସମିତି ଘରେ ଓ ବ୍ୟକ୍ତିଗତ ଘର ଭଡ଼ା ନେଇ କାର୍ଯ୍ୟ ହେଉଥିଲା । ଏବେ ସ୍ଥାୟୀ ଘରେ ହୋଇଛି ।

| | |
|---|---|
| ଶ୍ରୀ ସତ୍ୟବ୍ରତ ମହାନ୍ତି | ୮ । ୧ । ୫୮—୩୦ । ୧୧ । ୬୩ |
| ଶ୍ରୀ ଗିରିବର ସାହୁ | ୩୦ । ୧୧ । ୬୩—୨୬ । ୧୦ । ୬୫ |
| ଶ୍ରୀ ସୁଧାଂଶୁ କୁମାର ମହାନ୍ତି | ୨୫ । ୧୦ । ୬୫—୧୫ । ୭ । ୭୦ |
| ଶ୍ରୀ ଘନଶ୍ୟାମ ସାହୁ | ୧୫ । ୭ । ୭୦—୭ । ୮ ।୭୫ |
| ଶ୍ରୀ ଡ. ସି. ଶ୍ରୋଇ | ୧୯୭୫-୭୬ |
| ଶ୍ରୀ ସହଦେବ ରାଉତରାୟ | ୧୯୭୬-୭୮ |
| ଶ୍ରୀ ଜେନା | ୧୯୭୮-୭୯ |
| ଶ୍ରୀ ସୁଧାଂଶୁ କୁମାର ମହାନ୍ତି | ୧ । ୩ । ୭୯—୩୦ । ୬ । ୯୫ |
| ଶ୍ରୀ କୈଳାସ ଚନ୍ଦ୍ର ପ୍ରଧାନ | ୩୦ । ୬ । ୯୫— |

## ସାଂସ୍କୃତିକ ଅନୁଷ୍ଠାନ

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନାଞ୍ଜନ ଶଳାକୟା ।
ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।
କସ୍ତୁରୀ ତିଳକଂ ଲଲାଟ ପଟଳେ ବକ୍ଷସ୍ଥଳେ କୌସ୍ତୁଭଂ
ନାଶାଗ୍ରେ ଗଜମୌକ୍ତିକଂ କରତଳେ ବେଣୁଂ କରେ କଙ୍କଣଂ
ସର୍ବାଙ୍ଗେ ହରିଚନ୍ଦନଂ ସୁଲଳିତଂ କଣ୍ଠେ ଚ ମୁକ୍ତାବଳୀ
ଗୋପସ୍ତ୍ରୀ ପରିବେଷ୍ଟିତୋ ବିଜୟତେ ଶ୍ରୀଗୋପାଳଚୂଡ଼ାମଣିଃ ॥

ବାଦ୍ୟ— ଧିନ୍‌ତା ତାଧିନ୍‌ତା ତାହମତା ସେଓତା
ଝମ୍ ତା ଶତା ଝିଣୀ ତା ଧମ ତା ଶତା ଝିଣୀ
ତାଶିଗଟେ ଝମ୍, ତାଶିଗଟେ ଝମ୍, ତାଶିଗଟେ ଝମ୍ ॥

ସମତାଳ ନାଚ :

ବୃନ୍ଦାବନ ସର୍ବ ରମ୍ୟ ଦମ୍ପତି ରାଧାଗୋବିନ୍ଦ
ସର୍ବ ବ୍ରଜବାସୀ ନେତ୍ର ସମ୍ପତ୍ତି ରାଧାଗୋବିନ୍ଦ ।

କୁଆପୁଟ ରାସଯାତ୍ରା ଦୁଇ ଶତାବ୍ଦୀ ବ୍ୟାପୀ ଥିଲା । ଏ ରାସ ୩ ଭାଗରେ ବିଭକ୍ତ । ପୁରୁଣା ରାସ, ଶେଷ ରାସ ଓ ବୈଠକ ରାସ । ମହାନଦୀ ଆରପାରିରୁ, ବାଙ୍କମାଲ, ଡମପଡ଼ା, ଜଟଣୀ ଓ ଖୋର୍ଦ୍ଧାରୁ ଚାରିଗ୍ରାମ ଗ୍ରାହକମାନେ ରାସ ଦେଖିବାକୁ ଆସୁଥିଲେ । ଶରତକାଳୀନ ଓ ବସନ୍ତକାଳୀନ ଦୁଇପ୍ରକାର ରାସ ବର୍ଷ ମଧ୍ୟରେ ହେଉଥିଲା । ଜମିଦାର ଶ୍ୟାମସୁନ୍ଦର ଓ ଶାସନର ଶ୍ରୀ କୃପାସିନ୍ଧୁ କର ରାସ ଉପରେ କାବ୍ୟ ଲେଖି ରାସକୁ ପରିପୁଷ୍ଟ କଲେ । ୧୮୭୯ ବନ୍ଦୋବସ୍ତ ରିପୋର୍ଟରୁ ଜଣାଯାଏ ଯେ ସେତେବେଳକୁ ରାସଘର ବା କୁଞ୍ଜଘର କୁଆପୁଟ ମୌଜାର ପଶ୍ଚିମ ପ୍ରାନ୍ତରେ ହୋଇସାରିଥିଲା । କିଛି ଦିନ ବନ୍ଦ ରହିବା ପରେ ୧୯୨୫-୩୪ରେ ପୁଣି ରାସ ଉତ୍ସବ ହେଲା । ମାତ୍ର ଶେଷରେ କଂସାରୀ ସାହି ଭାଗବତ ଘରେ (୧୯୩୪-୬୦) ବୈଠକି ରାସ ହୋଇଗଲା । ସ୍ୱର୍ଗୀୟ ରାମଚନ୍ଦ୍ର ବିଧାର ରାସ ଆରମ୍ଭ କରିଥିଲେ ।

ଚିତ୍ତକୁ ଦେଇଛୁ ବିକି, ସ୍ୱକର କରି ରଖିନ୍ତୁ ଏଣିକ ଗୋ।
ଏବେ କହ ଯା' ବେଣୁପାଣିକ ।

ରାସ ୫ ଦିନ ୭ ଦିନ ବା ୧୫ ଦିନ ହେଉଥିଲା । ବସନ୍ତ ରାସ ଚୈତ୍ର ପୂର୍ଣ୍ଣିମାରୁ ହୁଏ ।

**ହୁଳହୁଳିଆ ରାସର ବିଶେଷତ୍ୱ :**

୧ । ବସନ୍ତ ରାସ ଓ ଶରତ ରାସ ଉଭୟ ହୁଏ ।

୨ । ଦୂରଦୂରାନ୍ତରୁ ଦର୍ଶକ ଆସନ୍ତି । ରାସ ଦେଖି ପ୍ରାତଃରୁ ଆମ୍ବ ନେଇ ଯାଆନ୍ତି । ଏଥିପାଇଁ ରାଜା ଗାଁ ମୁଣ୍ଡ ତୋଟାମାନ ଖଇରାତ ରଖିଥାନ୍ତି ।

ସାତମୁଠି ଜୁଆ ଖେଳଲେ କୃଷ୍ଣ ହୋଇଲେ ଧରା
କହିଲେ ଶ୍ରୀରାଧେ ନିଅ ଗୋ ଏବେ ମୁରଲୀ ବନ୍ଧା ।

୩ । ରାସପାଇଁ ନିମନ୍ତ୍ରଣମାନ ଦିଆଯାଉଥିଲା ।

୪ । ଜାତି ଅନୁସାରେ ଆସନ ବ୍ୟବସ୍ଥା କରାଯାଉଥିଲା ।

୫ । ଶାସନର ଶ୍ରୀ ଜଗନ୍ନାଥ ରଥ ଉଚ୍ଚ ସ୍ୱରରେ ଗୀତ ବୋଲୁଥିଲେ ।
ବୟସ କେତେ ତାଙ୍କର ଗୋ ଲଳିତେ ବୟସ କେତେ ତାଙ୍କର

ନବ ଚତୁର୍ଣିମା ଅନାଜ ବୟସ ହୋଇଥିବ ବାର ତେର ।
ଉଆସକୁ ଗୀତ ଶୁଭିଲେ ରାଜା ଆସୁଥିଲେ ।

୬ । ଜମିଦାର ପୀତବାସ ହାନ୍ଦୋଳାରେ ବସି ଆସୁଥିଲେ ଓ ସବାରୀ ବାହକମାନଙ୍କ "ଡାକ" ଶ୍ରୁତି ସୁଖକର ଥିଲା ।

୭ । ବାଲୁଙ୍କେଶ୍ୱର ମନ୍ଦିରରେ ନଡବର୍ତ୍ତି ପୂଜା, ବଉଳକୋଳ ଗଛରେ ବସ୍ତ୍ରହରଣ, ବଡ଼ ପୋଖରୀରେ କଳସ ବିସର୍ଜନ ଏବଂ ଦୈନିକ ସଙ୍କୀର୍ତ୍ତନ ରାସର ଅଂଶ ଥିଲା ।

ଝୁଲାଅ ଗୋ ଝଶୋରୀ କାହ୍ନା
କଶୋର କଶୋରୀ ବୋଲି ଉଚ୍ଚେ ଉଡ଼ୁ ବାନା ।
ନୀଳବର୍ଣ୍ଣ ଶାଢ଼ୀ ଅଙ୍ଗୁ ଦଅ କାଢ଼ି
ଯମୁନା ଜଳେ ଭସାଅ ଗୋ
ମରକତ ଚୂଡ଼ି ହସ୍ତୁ ଦଅ କାଢ଼ି
ସୁବର୍ଣ୍ଣ ବାହୁ ପିନ୍ଧାଅ ଗୋ
ଏହୁ ରାଧାର ପ୍ରତିଜ୍ଞା ବାଣୀ ଗୋ
ଜାଣିଥାଅ ମୋ ସଜନୀ ।

୮ । ରାସ ଘରର ହିଁ ଘୋଷର ପାହାଚ ଥିଲା ।

୯ । ରାସଘରୁ ଲୋକଙ୍କ କାନ୍ଧରେ ରାସପିଲାମାନେ ଯିବା ବେଳର ସଲଟଣ ଚିତ୍ରାକର୍ଷକ ଥିଲା ।

ଯେବେ ନାହିଁ ଗୋଧନ ତେବେ ମୋ ବାଣୀ ଶୁଣ
ଶ୍ରୀରାଧାଙ୍କ ବନ୍ଧା ଦେଇ ସ୍ଥୂଳ ବନ୍ଧନ ।

୧୦ । ପ୍ରଥମେ ଗୋପୀଚରଣ ଓ ବୈଠକରେ ଶ୍ରୀଚନ୍ଦନକୃତ ରାସ ଖେଦା ବୋଲାଯାଉଥିଲା ।

୧୧ । କୁଆପୁଟର ଶ୍ରୀ ଦୀନବନ୍ଧୁ ସାହୁ, ଶ୍ରୀ ଲୋକନାଥ ସାହୁ, ଶ୍ରୀ ଚିନ୍ତାମଣି ବେହେରା, ଶ୍ରୀ ରାମ ସାହୁ, ଶ୍ରୀ ନୀଳାଦ୍ରି ସାହୁ ଏବଂ ଶ୍ରୀ ଗିରିଧାରୀ ସାମନ୍ତରା ପୃଷ୍ଠପୋଷକ ଥିଲେ ।

ଆସ କେ ପିନ୍ଧିବ ସବୁ ଅଳତା
ପାଟ ଅଳତା ବ୍ରଜବନିତା ଗୋ ।

୧୨ । ଶ୍ରୀ ଦାସ ପୃଷ୍ଟି, ଶ୍ରୀ ନାଥ ପୃଷ୍ଟି, ଶ୍ରୀ କୁଞ୍ଜ ପୃଷ୍ଟି, ଶ୍ରୀ ଗଡ଼କୃଷ୍ଣ ସାହୁ ସ୍ୱଚରେ ଅଂଶଗ୍ରହଣ କଲେ ।

୧୩ । ଜଳୁଆଁ ଦିନ ବହୁ ମୌଜାରୁ କୀର୍ତ୍ତନମଣ୍ଡଳୀ ଆସୁଥିଲେ ।

ଆଗୋ ଗୋପ ନାଗରୀ                ଯେବେ ହୋଇବ ପାର
ଜଣ ଜଣ କରି ଦିଅ ଘାଟ କଉଡ଼ି ।

୧୪ । ଶ୍ରୀ କୃଷ୍ଣଚନ୍ଦ୍ର ପଣ୍ଡ (ହଳଦିଆଗଡ଼) ଉତ୍ତମ ରନ୍ଧନ କରି ଭୋଜନରେ ଆପ୍ୟାୟିତ କରୁଥିଲେ ।

୧୫ । ଜଳୁଆଁ ଦିନ ନଗର କୀର୍ତ୍ତନ ଓ ହଳଦିଆ ଖେଳ ହେଉଥିଲା ।

ଗଜାମାଳ ମୋର ନିଅ, ଗଜାମାଳ ମୋର ନିଅ
ଗିରିବରଧାରୀ ଗଳାରେ ଦିଅ ଗୋ
ଶୁଭେ କୁଞ୍ଜକୁ ବିଜେ କରାଅ ସଜନୀ ଗୋ ।

## କୋଠ ଫଣ୍ଡ

ଶାସନର ୯ ଘର ବ୍ରାହ୍ମଣ ଗୌଣି ଲେଖାଏଁ ଧାନ ଜମା କଲେ । ତାହା ବଢ଼ି ବଢ଼ି ଶାସନର ସ୍ଥିତି ସୁଦୃଢ଼ କରିଛି । ମନ୍ଦିର ନିର୍ମାଣ, ଟୋଲ ପରିଚାଳନା, ପୁଷ୍କରିଣୀ ଖନନ ଓ ଡାକ୍ତରଖାନା ନିର୍ମାଣ ଏଥିରୁ ହେଲା ।

ଶ୍ରୀ ଗୋପ ମିଶ୍ର ବସନ୍ତରେ କୋଠଫଣ୍ଡ ଆରମ୍ଭ କଲେ । ଶ୍ରୀ ନାରାୟଣ ସାହୁ ତାର ଅଭିବୃଦ୍ଧି କରାଇଲେ । ଏହି ଫଣ୍ଡ ବଳରୁ ବସନ୍ତରେ ଏକତା ଓ ଉନ୍ନତି ଘଟିଛି ।

### ସୁଆଙ୍ଗ :

ବାଡ଼ ସଦର ସାହି, ବାଉରୀ ସାହିରେ ଶ୍ରୀ କୃଷ୍ଣଚନ୍ଦ୍ର ଧଳ ଯାତ୍ରାଦଳ କରିଥିଲେ । ୧୯୪୦ରୁ ୧୯୫୦ ମଧ୍ୟରେ ଏମାନେ ପ୍ରତିଭା ପ୍ରଦର୍ଶନ କରିଥିଲେ ।

### ଗୀତା ଆଲୋଚନା :

୧୯୬୮ରୁ ସଂସ୍କୃତ ଟୋଲଠାରେ ଏକ ଗୀତା ଆଲୋଚନା ସଭା ହୋଇଥିଲା । ତା' ପରଠାରୁ ଶାସନରେ ଶୀତଳ ଷଷ୍ଠୀ ଦିନ ବାର୍ଷିକ

ଆଲୋଚନା ହେଉଛି । ପଶୁଚିକିତ୍ସା ଡାକ୍ତର ଶ୍ରୀ ସୁଧୀର ରଞ୍ଜନ ମହାନ୍ତି ୧୧ । ୧୧ । ୧୯୯୮ରେ (ଅଁଳା ନବମୀ) ମି: ଇ: ସ୍କୁଲଠାରେ ସତ୍ୟସାଇ ସେବାସଦନ ଓ ଗୀତା ଭବନ ନିର୍ମାଣ କରିଛନ୍ତି । ଏହାର Regd. No. KRD/6990 - 672/95-96 dt 4.3.1996.

## ପାଲା ବେଦୀ :

ହଳଦିଆ ଗଡ଼ ଗ୍ରାମପଞ୍ଚାୟତ ତରଫରୁ ୧୯୬୮ରୁ ରେଭିନ୍ୟୁ ଇନ୍‌ସପେକ୍ଟର ଅଫିସ ଆଗରେ ବାର୍ଷିକ ପାଲା ହେଉଛି ।

## ରାମଲୀଳା :

୧୯୫୦ରୁ ଶାସନରେ ବୈଠକି ରାମଲୀଳା ହେଲା । ୧୯୬୩ରୁ ଏକ ହନୁମାନଙ୍କ ଶ୍ରୀ ଦାମୋଦର ଦାସଙ୍କ ଘରେ ଠାକୁରଙ୍କୁ ଧରି ଭକ୍ତିଭାବ ପ୍ରକାଶ କଲା । ସେ ମାଙ୍କଡ଼ ଅଳ୍ପ ଦିନରେ ମଲା । ସେହି ଦିନ-ଠାରୁ ଠିଆ ରାମଲୀଳା ହେଲା । ଶ୍ରୀ ରଘୁନାଥ ରଣାଙ୍କଠାରେ ହନୁମାନ ପ୍ରସନ୍ନ ହେଲେ । ବହୁ ଦର୍ଶକ ଏକତ୍ରିତ ହୁଅନ୍ତି । ୧୯୭୭ରେ ଯାତ୍ରାକାରୀଙ୍କୁ ଆକ୍ରମଣ ହେବାରୁ ଯାତ୍ରା ବନ୍ଦ ହେଲା । ତା' ପରଠାରୁ ବୈଠକି ରାମଲୀଳା ହେଉଛି । କମସାହି, କୁଆପୁଟ ଗଡ଼ରେ ବୈଠକି ରାମଲୀଳା ହୁଏ ।

## ରଥଯାତ୍ରା :

୧୯୭୦ରୁ ଶାସନରେ ଗୁଣ୍ଡିଚା ଓ ବାହୁଡ଼ା ଦିନ ରଥରେ ପତିତପାବନଙ୍କୁ ବସାଇ କୁଆପୁଟ ପରିକ୍ରମା କରାଯାଉଛି ।

## ଉଦଣ୍ଡ :

ଶ୍ରୀ ପୀତବାସ ଭଞ୍ଜ ଜମିଦାରଙ୍କ ଅମଳରେ ଶର୍ଦ୍ଧିଦିନ ବ୍ୟାପୀ ଉଦଣ୍ଡ (ବାଦ) ଉଆସ ଦୁଆରେ ହେଉଥିଲା । ସଙ୍ଗୀତପ୍ରେମୀ ଶ୍ରୀରଘୁନାଥ ଏହାକୁ ବଞ୍ଚାଇ ରଖିଥିଲେ ।

## ସାରସ୍ୱତ ପୁସ୍ତକାଗାର :

୧୧ । ୫ । ୧୯୭୮ରୁ ଶାସନରେ ଏକ ଅନୁଷ୍ଠାନ ଗଢ଼ି ଉଠିଛି ।

**ବନଖଣ୍ଡି ମଠ :**

ସେ ଏକ ଅମ୍ଳାନ ସ୍ମୃତି । ଘଞ୍ଚ ଅରଣ୍ୟ ମଧ୍ୟରେ ମାଙ୍କୁଆ ଝରଣା ନିକଟରେ ବନଖଣ୍ଡିଠାରେ ମାଧବ ଦାସ ଆଶ୍ରମ କରିଥିଲେ । ନୃସିଂହ ଆରାଧ୍ୟ ଦେବତା ଥିଲେ । ବଣର ହିଂସ୍ରଜନ୍ତୁ ତାଙ୍କର ଅଧୀନ ଥିଲେ । ସେ ଜଙ୍ଗଲ ମଧ୍ୟରେ ମଠ ସ୍ଥାପନ କରି ଅନେକ ଉପାଦେୟ ବୃକ୍ଷ ଲଗାଇ ଥିଲେ । ତାଙ୍କ ପରେ ଗୃହୀ ବୈଷ୍ଣବ—ଘର ମଦନପୁର ଏଠାରେ ମଠ କଲେ । ମାତା ସହ ସେଠାରେ ରହୁଥିଲେ । ବହୁ ଗାଈ ରଖିଥିଲେ । ଗୋରସ ଗାଁକୁ ବହିପାଇଁ ଆସୁଥିଲା ମାତ୍ର ଚେଲା ଆନନ୍ଦ ଦାସଙ୍କୁ ବାଘ ଖାଇବାରୁ ସ୍ଥାନଟି ପରିତ୍ୟକ୍ତ ହେଲା । ସ୍ମରଣାତୀତ କାଳରୁ ଏଠାରେ ଏବେ ବି ବାର୍ଷିକ ବଣ ଭୋଜି ହେଉଛି । ବନମାଳୀ ମିଶ୍ର (ଭଗବାନପୁର ଶାସନ) ଏହି ବାର୍ଷିକ ଭୋଜିପାଇଁ ଆଗ୍ରହୀ ଥିଲେ ।

**ମହନ୍ତଗଣ :**

ଶ୍ରୀ ସୁନ୍ଦର ଦାସ
ଶ୍ରୀ ବଜ୍ରାଙ୍ଗୀ ଦାସ
ଶ୍ରୀ ମାଧବ ଦାସ
ଶ୍ରୀ ଗୌରାଙ୍ଗ ଦାସ
ଶ୍ରୀ ଆନନ୍ଦ ଦାସ

ସିଦ୍ଧ ପୁରୁଷମାନେ ଗାଁ ମଧ୍ୟକୁ ବାଘବାହନରେ ଆସିଥାଆନ୍ତି । ବନଖଣ୍ଡି ମଠ ତରକାଇ ମୌଜାରେ । ଶ୍ରୀ ବାନାମ୍ବର ଶ୍ରେଷ୍ଠରାୟ ଏହାର ପୃଷ୍ଠପୋଷକ । ମଠଭୂମି ୫୦ ଏକର । ଘଞ୍ଚ ଅରଣ୍ୟ ଓ ହିଂସ୍ରଜନ୍ତୁପୂର୍ଣ୍ଣ ସ୍ଥାନରେ ବହୁ ପୂର୍ବେ ଏକ ଆଶ୍ରମ ସଭ୍ୟତା ଜନ୍ମ ନେଇଥିଲା ହଳଦିଆରେ ।

## ଦଶହରା ପଡ଼ିଆ

ହଳଦିଆର ପୂଜାମଣ୍ଡପ ଓ ଶିକ୍ଷାନୁଷ୍ଠାନ ଏକତ୍ର ଅବସ୍ଥାନ କରିଥାଆନ୍ତି । ହଳଦିଆର ମଧ୍ୟବର୍ତ୍ତୀ ସ୍ଥାନ ନିମସାଇଠାରେ ଦଶହରା ପଡ଼ିଆରେ ଉତ୍ସବ ହେଉଥିଲା । ଏଠାରେ ଏବେ ହାଟପାଣ୍ଠି ପୋଖରୀ ହୋଇଛି । ମାତ୍ର ଉତ୍ସବସ୍ଥଳ ଦୂର ହେବାରୁ ଗଡ଼ର ପଶ୍ଚିମ ମୁଣ୍ଡକୁ

(କଦମ୍ବ ବଜାର) ମେନ୍ତେବେଳର ସ୍କୁଲଠାରୁ ଉଠାଇ ନିଆଗଲା । ଏଠାରେ ୧୯୧୮ରୁ ଏଲ୍.ପି. ସ୍କୁଲ ହେଲା । ୧୯୪୫ରେ ସ୍କୁଲ ଅଞ୍ଚଳକୁ (ଏବର ଆସ୍ଥାନକୁ) ଦଶହରା ପଡ଼ିଆ (ବାଦାମ ପଡ଼ିଆ) ଉଠାଇ ନିଆଗଲା । ଏଠାରେ ଏକ ମଣ୍ଡପ ଅଛି । ଦୋଳପୂର୍ଣ୍ଣିମା ଓ ଦଶହରାପର୍ବ ଗୋଟିଏ ସ୍ଥାନରେ ହୁଏ । ଦେବୀ ଷୋଳପୂଜା ମାତ ଗ୍ରହଣକରି ଦଶହରା ଦିନ ପଡ଼ିଆକୁ ଆଡ଼ମ୍ବର ସହକାରେ ଆସନ୍ତି । ରଜା କନକଦୁର୍ଗାଙ୍କ ଅନୁଗମନ କରନ୍ତି । ମଣ୍ଡପରେ ରତ୍ନାକର ଭଞ୍ଜ ଓ ଶାରଦର ଭଞ୍ଜଙ୍କ ପରିବାର ମାଛ ଆଖିକୁ ଲକ୍ଷ୍ୟଭେଦ କରି ଧନୁଶର ମାରନ୍ତି । ହଳଦିଆର ସମସ୍ତ ବନ୍ଧୁକଧାରୀ ବନ୍ଧୁକ ଆବାଜ କରନ୍ତି । ପ୍ରଥମେ ରଜା ବନ୍ଧୁକ ଅନୁକୂଳ କରନ୍ତି । ଦୋଳସ୍ବଚେଶ୍ୱ ଖାଇ ଠାକୁର ଦୋଳ ବେଦୀକୁ ଆସନ୍ତି । ସେଠାରେ ଦୋଳରେ ଝୁଲନ୍ତି । ପାଞ୍ଚଦିନଯାଏ ଉଭୟ ପର୍ବରେ ଦୋକାନ ବଜାର ବସେ । ଏ ଦୁଇଟି ଅଞ୍ଚଳର ବିଶିଷ୍ଟ ପର୍ବ । ସ୍ୱରି ଶିବ ସ୍ବଚେଶ୍ୱରଭୋଗ ଦୈନିକ ଉଆସରୁ ଖାଇ ମୌଜା ବୁଲନ୍ତି । ଦୋଳପୂର୍ଣ୍ଣିମା ଦିନ ନନ୍ଦନନ୍ଦନ ଦୋଳବେଦୀରେ ଝୁଲନ୍ତି ।

## ବିଦ୍ୟୁତ୍ କରଣ :

ଅଞ୍ଚଳକୁ ୧୯୬୪ରୁ ବିଦ୍ୟୁତ୍‌ଲାଇନ୍ ଯାଇଛି ।

## ଗଜଲକ୍ଷ୍ମୀ ପୂଜା :

ହାଟ ଛକରେ ବ୍ରାହ୍ମଣବେରଣୀ ଯୁବ କ୍ଲବ ୧୯୮୫ରୁ ଗଜଲକ୍ଷ୍ମୀ ପୂଜା କରୁଛନ୍ତି । ୧୯୮୨ରୁ ସରସ୍ୱତୀ ବଜାରରେ ଗଣେଶ ପୂଜା ଆରମ୍ଭ ହୋଇଛି ସ୍କୁଲଠାରେ । ୧୯୮୫ରୁ ବସନ୍ତମୌଜାରେ (Lift Irrigation ଦ୍ୱାରା ଜଳସେଚନ ହୋଇଛି ।

୧୯୭୦ରୁ କଦମ୍ବ ଗଛ ଛକରେ (ଗଡ଼ ପଶ୍ଚିମପ୍ରାନ୍ତ) ଦେବୀପୂଜା ପାଳିତ ହେଉଛି ।

## ଭଞ୍ଜକ୍ଲବ :

୧୯୩୪ରୁ ଭଞ୍ଜ ଉପାଧିଧାରୀ କ୍ଷତ୍ରିୟମାନେ ନିଜ ସାଙ୍ଗ ଓ ଭଞ୍ଜଙ୍କ ନାମାନୁସାରେ କ୍ଲବ କରିଛନ୍ତି । ୧୯୭୩ରୁ ଏଠାରେ ଭଞ୍ଜ ଜୟନ୍ତୀ ହେଉଛି । ୧୯୬୭ରୁ ସ୍ଥାୟୀ କୋଠାଘର ହୋଇଛି ।

**ଶୀତଳଷଷ୍ଠୀ :**

୧୯୫୯ରୁ ୭୭ ଶାସନରେ ଯାକଜମକରେ ଶୀତଳଷଷ୍ଠୀ ଉତ୍ସବ କରାଗଲା । ୧୯୮୧ରୁ ନରାଡ଼ମ୍ବରରେ ପାଳିତ ହେଉଛି ।

**ରାମକାବ୍ୟ :**

ଭଗବାନପୁର ଶାସନର ଶ୍ରୀ ବନମାଳୀ କର ରାମକାବ୍ୟ ରଚନା କରିଥିଲେ । ଚନ୍ଦ୍ରିକା ବ୍ୟାକରଣକୁ ସନ୍ଧି, ଶବ୍ଦ, ଧାତୁ, କାରକ, ସମାସ, ତଦ୍ଧିତ । ଣିଜନ୍ତ ଇତ୍ୟାଦି ବାନ୍ଧି ଶ୍ଳୋକ ରଚନା କରିଥିଲେ । ସେ ଅଷ୍ଟାଦଶ ଶତାବ୍ଦୀର ଲେଖକ ।

## ପରିମଳା କାବ୍ୟ

୧୫୩୨-୧୫୬୮ ମୁକୁନ୍ଦଦେବ ଖୋରଧାର ରାଜା ଥିଲେ । ୧୭ଶ ଶତାବ୍ଦୀରେ ଗଜପତିଙ୍କ ଖୋରଧା ରହଣି ସମୟରେ ହଳଦିଆର କୁଆପୁଟରେ ସେଣ ମହାପାତ୍ର ସାଜ୍ଞଧାରୀ ଏକ ପରିବାର ବାସ କରୁଥିଲେ । ସ୍ୱରପୁରୁଷ ମଧ୍ୟରୁ—

ଉମାପତି ସେଣ
ଚମ୍ପକ ସେଣ
ନରସିଂହ ସେଣ
ବିଶ୍ୱନାଥ ସେଣ

"ପରିମଳା" ନରସିଂହଙ୍କର ଏକ ଉଲ୍ଲେଖଯୋଗ୍ୟ କୃତି । ଏହା ୨୪ ଛାନ୍ଦରେ ବିଭକ୍ତ ଏବଂ ବିଭିନ୍ନ ରାଗ ରାଗିଣୀରେ ରଚିତ । ସେ ମଧ୍ୟ "ଗୋପଲୀଳା"ର ରଚୟିତା । ଏହା ଏପରି ଏକ କାବ୍ୟ ଯେଉଁଥିରେ ନାଟକର ବିଭିନ୍ନ ବିଭାଗ ଓ ନାଟ୍ୟଶାସ୍ତ୍ରର ବିଭିନ୍ନ ତତ୍ତ୍ୱ ପୂର୍ଣ୍ଣମାତ୍ରାରେ ସନ୍ନିବେଶିତ । ସେ "ରସ ମୁକ୍ତାବଳୀ" ନାମକ ଏକ ଅଳଙ୍କାର ଗ୍ରନ୍ଥ ରଚନା କରିଥିଲେ । ତାଙ୍କ ରଚିତ ପରିମଳା ପ୍ରଥମ କାଳ୍ପନିକ କାବ୍ୟ । "ଗୋପ" ଶ୍ରୀକୃଷ୍ଣ ଗୋପୀମାନଙ୍କର ରାସ ବର୍ଣ୍ଣନା କରିବା ପାଇଁ ପ୍ରଥମ ଓଡ଼ିଆ କାବ୍ୟ ଓ ରସ ମୁକ୍ତାବଳୀ ଓଡ଼ିଆ ସାହିତ୍ୟର ପ୍ରଥମ ଅଳଙ୍କାର ଗ୍ରନ୍ଥ ।

ପଶମଳାରେ ମଦ୍ଦୁରକେତୁ—ସିଂହଳ ରାଜପୁତ୍ର
ପଶମଳା—କାଞ୍ଚିରାଜକନ୍ୟା ।

ସେଣ ମହାପାତ୍ରଙ୍କ ବାସସ୍ଥଳୀ—କୁଆପୁଟ ମୌଜାରେ ବାଲ୍ମିକେଶ୍ୱର ମନ୍ଦିର ପୂର୍ବ ଦିଗରେ । ସ୍ମୃତିସ୍ୱରଣ ପାଇଁ କୁଆପୁଟ ବଜାର ନାମ ପଶମଳା ବଜାର ଅଟେ ।

## ଉତ୍ପନ୍ନ ଦ୍ରବ୍ୟ

ହଳଦିଆର ଉତ୍ପନ୍ନ ଦ୍ରବ୍ୟ ମଧ୍ୟରେ, ନଦୀ ଉତ୍ପନ୍ନ, କୃଷିଜାତ ଓ ଜଙ୍ଗଲଜାତ ଦ୍ରବ୍ୟ ପ୍ରମୁଖ ସ୍ଥାନ ଅଧିକାର କରିଛି ।

**କୃଷି :**

ଧାନ, ମାଣ୍ଡିଆ, ହରଡ଼, ମୁଗ, ବୁଟ, କୋଳଥ, ଚଣା ହୁଏ । ନଦୀକୂଳରେ ପଟୁମାଟିରେ ରବି ଶସ୍ୟ ଓ ଡାଲୁଅ ଧାନ ହୁଏ ।

**ଜଙ୍ଗଲ :**

ବନ୍ୟ ପଶୁମାଂସ, ବାଘନଖ, ମିରଗଶିଙ୍ଗ, ହାତୀଦାନ୍ତ, ଜାଳେଣି କାଠ, ହରିଡ଼ା, ବାହାଡ଼ା, ଅଁଳା, ଆମ୍ବ, କେନ୍ଦୁପତ୍ର ଓ ଶାଳପତ୍ର ଖଲି, ବେତ, ଟୁଙ୍ଗା, କରବା, ଲେହଆକୁ, ଲେଖନ କୋଳି, କଇଁଥ, ଖଜୁରୀ, ମହୁଲ ଚରୁଗୁଡ଼ିଆ, କେନ୍ଦୁ, ମହରଡ଼ା ଫଳ ଓ ଫୁଲ, ଗୃହନିର୍ମାଣ ସାମଗ୍ରୀ ଜଙ୍ଗଲରୁ ମିଳେ ।

**ପର୍ବତଜାତ :**

ଶିଳ, ଶିଳୁପୁଆ, କୁଣ୍ଡ, ଚୌକି, ଚଇଲାରୁ ପଥରବା, ଅଭ୍ର ମୃତ୍ତିକା—(ସିଲଟରେ ଲେଖିହୁଏ) ସଂଗ୍ରହ କରାଯାଏ ।

**ନଈ :**

ମାଛ, ଗେଙ୍ଗୁଟି ପଥର, ଛଣ, ଚଣ୍ଡି, ବେଣା, ପଟୁମାଟି, କୁମ୍ଭୀର, ଘାଟଦଳମ, ଉଠାଜଳସେଚନ ଯୋଗୁଁ ଡାଲୁଅଧାନ ଆଦି ନଦୀର ଅବଦାନ ।

## •ହଳଦ କାଠୁଆ, ଶିଳ ଶିଳୁ ପୁଆ ଓ ମଝେଇ ଘଡ଼

### ଧାତୁ :

ହଳଦଆର ଶିଳ୍ପ ସୁଦୂର ପ୍ରସାସ୍ତ । ଧାତୁକାମ ପ୍ରଧାନ । ଦେବତା ଗଠନ, ପ୍ରସ୍ତନିର୍ମାଣ, ନାଗଭଆଣ, କଂସାବାସନ, ପିତ୍ତଳ ହଣ୍ଡା, ମନ୍ଦରର ଚକ୍ର ଓ ତ୍ରିଶୂଳ, ମଗର, ପାନବଟା, ଗଗ୍ର, ଘଣ୍ଟି ଓ ଘଣ୍ଟା କୁଆପୁଟର କଂସାରିମାନେ କରନ୍ତି । ଶ୍ରୀ ବାଞ୍ଛାନିଧି ସାହୁ, କଣ୍ଡୁରି ସାହୁ, ଲୋକନାଥ ସାହୁ ପ୍ରମୁଖ ଉତ୍ତମ ଶିଳ୍ପୀ । କୁଆପୁଟ ସୁନାରକଣିଆଁମାନେ ସୁନାରୁପା କାମ କରନ୍ତି ।

ପଥର ନିର୍ମିତ ବାସନ, ଶିଳ, କୁଅନନ୍ଦ ବସାଇବା ଇତ୍ୟାଦ କୁଆପୁଟ "ଓଝା" ସାଙ୍ଗିଧାସ୍ତ କମାରମାନେ କରନ୍ତି । (ଶ୍ରୀ ବନମାଳୀ ଓଝା, ମାଳାଦ୍ରି, ନରସିଂହ, ଉଦ୍ଧବ, ଆନନ୍ଦ, ଅନନ୍ତ ଓ ହରି ଓଝା ।)

### ମାଟିବାସନ :

କୁଆପୁଟ ଓ ବ୍ରାହ୍ମଣବେରଣୀ କୁମ୍ଭାରମାନେ ହାଣ୍ଡି ଆଟିକା ଗଢ଼ନ୍ତି ।

### ଚିତ୍ରାଙ୍କନ :

ଚିତ୍ରାଙ୍କନ ଓ ମୂର୍ତ୍ତିଗଠନ ପୁରୁଣାଗଡ଼ ଚିତ୍ରକାର ଓ ଲିଙ୍ଗରାଜ ମହାପାତ୍ର, ହରିବନ୍ଧୁ ଓ ଶ୍ରୀ ବାଳଗ୍ରବନ୍ଧୁ ମହାପାତ୍ର କରିଥାଆନ୍ତି ପୁରୁଷାନୁକ୍ରମେ ।

### କାଠକାମ :

ବ୍ରାହ୍ମଣବେରଣୀ ଲିଙ୍ଗରାଜ ଓଝା, କୁଆପୁଟ ବାଞ୍ଛାନିଧି ସେଠୀ, ଗୌରାଙ୍ଗ ସେଠୀ, କାଠୁଆ, ଲଙ୍ଗଳ, ଖଟ, ଗୃହ ନିର୍ମାଣ କରନ୍ତି । ବାଉଁଶ ଖୁଣ୍ଟୁଣୀ ଭଆଣ ଏକ ଶିଳ୍ପ । ଆମ୍ବତୋଳାଳୀଙ୍କୁ ଜଣା ।

ଗାଣ୍ଡୁଆ, କୁଲା, ପେଡ଼ି—ହାଟସାହି ଡମମାନଙ୍କ ପେଷା ।

### ଆମ୍ବୁଲ ଖଟା :

ଆମ୍ବୁଲ, କୋଟ, ଆମ୍ବସଢ଼ା ଓ ଆମ୍ବର ପ୍ରଚୁର ପରିବାରରେ ହୁଏ ।

**ବରମୁଣ୍ଡା :**

ମନୋହର—ମଧୁଚକ୍ରିଶ୍ୟ କରିଥାଆନ୍ତି ।

**ଜାତକ :**

ବ୍ରାହ୍ମଣବେରଣୀ ମାଟିବଂଶ ଅବଧାନ ଲୋକପଟରେ କୋଷ୍ଠୀ ତିଆରି କରନ୍ତି ।

**ଦୋଳା, ତାଟି :**

ଆଭୁଣ୍ଡି, ଗାଣ୍ଡୁଆ, ଦୋଳା ଶଅରମାନେ କରିବାରେ ଧୁରନ୍ଧର । ବାଉଁଳ ଝଡ଼ା ଛବିଯୁମାନଙ୍କର ସଉକ ।

## ଅଣହଳଦିଆ ତଅଣ, ବୁଢା ସୁଆଦ ବାଶବ କଅଣ

୧ । ଜଳାଭାବ ହଳଦିଆର ଚିର ସହଚର । ୧୯୭୯ରୁ ମାଡ଼ୁଆ ବନ୍ଧ ପାଣି ନୂଆପୁଟରେ ଓ ୧୯୮୮ରୁ ଉଠାଜଳସେଚନ ପାଣି ବସନ୍ତରେ ଫସଲ ବଞ୍ଚାଉଛି । ଏ ଦୁଇ ପ୍ରକଳ୍ପର ଉନ୍ନତିରେ ଜଳାଭାବ ଦୂର ହେବ ।

୨ । ଛାଡ଼କା ପାହାଡ଼ ମଧ୍ୟସ୍ଥ ଖୋର୍ଦ୍ଧା ଢମପଡ଼ା ରାସ୍ତା ଖୋଲିଗଲେ ଉଠାଣି ଉଠା ଓ ଗଡ଼ା ଶ୍ରମ ଲାଘବ ହେବ ।

୩ । ଆଦିବାସୀ ଲୋକଙ୍କ ପାଇଁ ଆଦିବାସୀ ବିଦ୍ୟାଳୟ ଖୋଲିଗଲେ ଦଳିତ ଜାତିର ଉନ୍ନତି ହେବ ।

୪ । ଛାତ୍ରୀମାନଙ୍କ ପାଇଁ ସ୍ୱତନ୍ତ୍ର ବାଳିକା ଅନୁଷ୍ଠାନମାନର ଅଭାବ ପରିଲକ୍ଷିତ ହେଉଛି ।

୫ । ଶିକ୍ଷାନୁଷ୍ଠାନମାନ ଦୂରରେ ରହିଥିବାରୁ ଛାତ୍ରଛାତ୍ରୀଙ୍କ ପାଇଁ ମଟର ଯାନ ବହୁତ ଦରକାର ।

୬ । ଦର୍ଶନୀୟ ବସ୍ତୁ ସୁରକ୍ଷାପାଇଁ ପ୍ରଦର୍ଶନୀ ଗୃହ ସଂଗ୍ରହାଳୟ ସ୍ଥାପନ ଆବଶ୍ୟକ ।

୭ । ବସନ୍ତ ମୌଜାରେ ଏକ ହାଇସ୍କୁଲ ପ୍ରତିଷ୍ଠା ହେଲେ କଲେଜର ଶକ୍ତି ବଢ଼ିବ ଓ ଶିକ୍ଷା ବିସ୍ତାର ହେବ ।

୮ । ହଳଦିଆ ଏକ ଶିଳ୍ପ ବହୁଳ ଅଞ୍ଚଳ । ଉତ୍ତମ ସ୍ୱାଦଯୁକ୍ତ ଆମ୍ବ ଆମ୍ବର ପାଇଁ ଏକ କାରଖାନା କରିପାଇପାରେ ।

୯ । ଗମନାଗମନ ବଢ଼ିଯାଇଥିବାରୁ ବିଶ୍ରାମପାଇଁ ଏକ ବିଶ୍ରାମାଗାର ବା ଧର୍ମଶାଳା ପ୍ରତିଷ୍ଠା ଅଭାବ ଅନୁଭୂତ ହେଉଛି ।

୧୦ । ଆଧୁନିକ ସଭ୍ୟତାର ଅଙ୍ଗ ଏକ ପ୍ରେକ୍ଷାଳୟକୁ ହଳଦିଆବାସୀ ଅପେକ୍ଷା କରିଛନ୍ତି ।

୧୧ । ଧଣ୍ଡିଆ ମୁଣ୍ଡିଆର ଅଭ୍ରମାଟିରୁ ପ୍ଲେଟ ତିଆରି ପାଇଁ କାରଖାନା ସ୍ଥାପନ ।

୧୨ । ନଇକୂଳରୁ ମିଳୁଥିବା ଗେଙ୍ଗୁଟି ପଥରର ସଦ୍‌ବ୍ୟବହାର ପାଇଁ ଶିଳ୍ପ କାରଖାନା ପ୍ରତିଷ୍ଠା ।

୧୩ । ହାଟଠାରୁ ସ୍କୁଲ ପାଖ ଅଞ୍ଚଳକୁ ଡାକଘର ଅଣାଯିବା ଆବଶ୍ୟକ ।

୧୪ । ରଣନଘାରେ ସ୍ଥାୟୀ ପୋଲ କରି ହଳଦିଆ ଓ ତୁଳସୀପୁରକୁ ଯୋଗ କଲେ ଖୋର୍ଦ୍ଧା ଓ ବାଙ୍କିର ଦୂରତା କମିଯିବ ।

୧୫ । ପାଞ୍ଚମୌଜାର କିଛି ଲୋକ ମାଙ୍ଗୁଆ ବନ୍ଧଠାରେ ଜନବସତି କଲେ ସ୍ଥାନାଭାବ ଦୂର ହୁଅନ୍ତା ।

## କୀର୍ତ୍ତିର୍ଯସ୍ୟ ସ ଜୀବତି

ଜମିଦାର ଶ୍ରୀ ପୀତବାସ ଭଞ୍ଜ ହାରବର ଜଗଦେବ ନିଜ ଉଆସରେ ତିନିଗୋଟି ଓ ଅନ୍ୟ ସ୍ଥାନରେ ଆଉ ପନ୍ଦରଟି କୂଅ ଖୋଳାଇଛନ୍ତି । ଏଥିରୁ କେତୋଟି ଶଅର ସାନ୍ଧ, ବସନ୍ତ, ଲଟାକୂଅ ଇତ୍ୟାଦି । ୧୯୧୮ରୁ ରଘୁନାଥ ମନ୍ଦିର ଉଆସଠାରେ ନିର୍ମାଣ କରିଛନ୍ତି । ଏସବୁରେ ପାଟ ମହାଦେଈଙ୍କ ଅବଦାନ ଭରପୂର ।

ଶ୍ରୀ ଗଣେଶ୍ୱର ସାହୁ ବା ସାହୁଗଣିତା କୁଆପୁଟ ମୌଜାରେ ଗଣାବସା ପୋଖରୀ ଓ ଗଣା କୂଅ ଖୋଳାଇଛନ୍ତି ।

ଶ୍ରୀ ଦାଳକା ଦାସ ନାମକ ଧର୍ମପରାୟଣ ବ୍ୟକ୍ତି କୁଆପୁଟ ମୌଜାରେ ପଥର କୂଅ, ବଲକୂଅ ଓ ଗଡ଼ରେ ଗଡ଼କୂଅ ନିର୍ମାଣ କରିଛନ୍ତି । ଶ୍ରୀମତୀ ସୁନାମଣି ଦେଇ ସ୍ୱା—ବାଲ୍ମୀକେଶ୍ୱର ଭଞ୍ଜ (ପିତା—

କୁଆପୃଷ୍ଟର ସତ୍ୟବାଦୀ ପଟ୍ଟନାୟକ) ବଣବଲ ଯିବା ରାସ୍ତାରେ ଏକ ପୋଖରୀ କରିଛନ୍ତି । ତାହା ସୁନାଦେଈ ନାମରେ ଖ୍ୟାତ ।

ଶ୍ରୀ ବନମାଳୀ ମିଶ୍ର ଶାସନ ମଧ୍ୟରେ ଏକ କୂଅ ୧୯୩୯ରେ ଖୋଳାଇଛନ୍ତି । ଏହି କୂଅ ଖୋଳାବେଳେ ଅଚାନକ ଖସି ଶ୍ରୀ ଆନନ୍ଦ କରଙ୍କ ମୃତ୍ୟୁ ହୋଇଥିଲା । ଶାସନ ପୂର୍ବପଟେ ଶାସନ ଝିଅ ଗୋଡ଼ପଡ଼ାର ବୋହୂ ରୁକ୍ମିଣୀ ଦେଈ୍ଧା ସ୍ୱା—ଆନନ୍ଦ ପ୍ରହରାଜ ଏକ କୂପ କରି ଜଳଦାନ କରିଛନ୍ତି ।

ବ୍ରାହ୍ମଣବେରଣିର ଶ୍ରୀ ଗୋପିନାଥ ଲେଙ୍କା ତାଙ୍କ ମୌଜାରେ ଖାଇବା କୂଅ ଓ ବାଡ଼ କୂଅ ନିର୍ମାଣ କରି ଅମର ହୋଇଛନ୍ତି । ତାଙ୍କ ପୁତ୍ର ଶ୍ରୀ ଜଗନ୍ନାଥ ଲେଙ୍କା ତାଙ୍କରି ତଳେ ଲେଙ୍କା ଠିଆ ଓ ମୌଜାରେ ଅଁଳା ସାଗର ଖୋଳାଇଛନ୍ତି । ମନ୍ଦିର ନିର୍ମାଣ କରି ଠାକୁର ପ୍ରତିଷ୍ଠା କରିଛନ୍ତି । ଏହି ମନ୍ଦିର ୧୯୬୩ରେ ଗଜପତି ଶ୍ରୀ ବୀରକେଶରୀ ଦେବ ପ୍ରତିଷ୍ଠା କରିଛନ୍ତି ।

୧୯୪୮ରୁ କୁଆପୃଷ୍ଟର ଶ୍ରୀ ନରସିଂହ ପ୍ରଧାନ ଓ ଶ୍ରୀ ଭ୍ରମରବର ପ୍ରଧାନ ସ୍କୁଲ ହତାରେ ଏକ କୂଅ ଖୋଳାଇ ଅଞ୍ଚଳକୁ ଜଳସୁଲଭ କରାଇଛନ୍ତି ।

ଭଗବାନପୁର ଶାସନ ବ୍ରାହ୍ମଣମାନେ ନିଜ କୋଠଫଣ୍ଡରୁ ବାଲୁଙ୍କେଶ୍ୱର ମନ୍ଦିର ଗଢ଼ିଛନ୍ତି । ଏହା ୧୯୪୦ରେ ପ୍ରତିଷ୍ଠା ହୋଇଛି । ଭଗବାନପୁର ଶାସନ ସ୍କୁଲ ଓ ଭଗବାନପୁର ଶାସନ ପ୍ରାଥମିକ ସ୍ୱାସ୍ଥ୍ୟ-କେନ୍ଦ୍ର ବ୍ରାହ୍ମଣମାନଙ୍କ କାର୍ତ୍ତି । "ଶିବସାଗର" ୧୯୬୨ରେ ବ୍ରାହ୍ମଣଙ୍କ ଧନରେ ଖୋଳାଯାଇଛି । ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀର ଛାତ୍ରମାନେ ଶ୍ରମଦାନ କରିଛନ୍ତି । ହାଟଛକଠାରେ ୧୯୬୪ରେ ଶାସନର ଶ୍ରୀମତୀ ସଂଯୁକ୍ତା ଦାଶ (ସ୍ୱର୍ଗୀୟ ମଧୁସୂଦନ ଦାଶଙ୍କ ପୁତ୍ରବଧୂ ) ଏକ କୂପ ଖନନ କରାଇ ଜଳାଭାବ ଦୂର କରିଛନ୍ତି । ହାଟଛକଠାରେ ଶ୍ରୀ ପଦ୍ମନାଭ ଭଞ୍ଜ (ଶିକ୍ଷକ) ଏକ ଚବୁତରା ଖୋଳାଇଛନ୍ତି ଓ ଚଉରା ଗଢ଼ିଛନ୍ତି ।

ଶ୍ରୀ ଭାଗବତ ଭଞ୍ଜ ଗଡ଼ ମଧ୍ୟରେ ମନ୍ଦିର ନିର୍ମାଣ କରି ରାଧାମୋହନ ଠାକୁର ବିଜେ କରାଇଛନ୍ତି । ତତ୍‌ସଂଲଗ୍ନ ପୁଷ୍କରିଣୀ ତାଙ୍କରି କାର୍ତ୍ତି ।

ଶ୍ରୀ ଶ୍ୟାମ ମଳିକ ବାଲ୍ମୀକୀଶ୍ୱରଙ୍କ ନିକଟରେ ଟୁଭ ପୋଖରୀ ଖୋଳାଇଛନ୍ତି । ବହୁ ଦିନ ପରେ ଏହା ୧୯୯୮ରେ ପ୍ରତିଷ୍ଠା ହୋଇଛି ।

## ସଉକ

ଜଙ୍ଗଲରୁ ଶିକାର କରିବା (ପାରିଧିକୁ ଯିବା), ପ୍ରଥମ ବର୍ଷାଦିନ ରଣରୁ ଅଣ୍ଡଙ୍ଗା ମାରିବା ହଳଦିଆବାସୀଙ୍କ ସଉକ । କ୍ଷତ୍ରିୟମାନେ ମଲ୍ଲକୁସ୍ତି, ଘର ଉତ୍ତୋଳନ, ଲଖବନ୍ଧା କରନ୍ତି । ମାତ୍ର ଆବଦ୍ଧ ଜଳାଶୟରେ ନୌକାବିହାର କେତେକଙ୍କର ଆକର୍ଷଣୀୟ ହୋଇଛି । ଚଢ଼େଇ, ଶୁଆଶାରୀ ଧରିବା, ପାଳିବା ଓ ବାଟୁଳଖଡ଼ା ତିଆରି କରିବା କେତେକଙ୍କର ସଉକ । କୁଆପୃଷ୍ଠ ଯଦୁ ସିଂହ ଏ ଦିଗରେ ଆଗୁଆଥିଲେ ।

## ବାଘଶିକାର ଓ ପୁରସ୍କାର ପ୍ରାପ୍ତ ଶିକାରୀମାନେ

ଶ୍ରୀ ନରସିଂହ ଭଞ୍ଜ — ୧୯୩୯

ଶ୍ରୀ କେନ୍ଦୁଚରଣ ଭଞ୍ଜ — ୧୯୪୨

ଶ୍ରୀ ବାନାମ୍ବର ଭଞ୍ଜ — ୧୯୪୫

## ହାତୀ ଖୋଜିଲେ ପିମ୍ପୁଡ଼ି ନ ମରେ ମଣିଷ ମରେ

ଶ୍ରୀ ପଦ୍ମନାଭ ଭଞ୍ଜ

ଶ୍ରୀ ପ୍ରସନ୍ନମଣି ଭଞ୍ଜ ୧୯୭୬

## ବାଘ କବଳରେ ମନୁଷ୍ୟ

ଶ୍ରୀ ଆନନ୍ଦ ଦାସ — ବନଖଣ୍ଡି ମଠ ଚେଲା

ଶ୍ରୀ କ୍ଷେତ୍ର ପାତ୍ର — ଚମ୍ପାତିପୁର

ଶ୍ରୀ ଘାଲୁ ସ୍ୱାଇଁ — ଦଣ୍ଡେଇ ଶଅର ସାନ୍ଧ ।

## ମଧ୍ୟେଇ ଘୁରୁଘୁରୁ

୧ । ପୂର୍ବଦିଗରେ ପର୍ବତ ଓ ଜଙ୍ଗଲ, ପଶ୍ଚିମରେ ଋଣ ନଦୀ ଅବସ୍ଥିତ । ହଳଦିଆ ନାମକ ସ୍ଥାନ ନାହିଁ । ମାତ୍ର ପାଞ୍ଚମୌଜାର ଲୋକେ ଏହି ନାମରେ ନାମିତ ହେବାକୁ ପସନ୍ଦ କରନ୍ତି ।

୨ । ଏହା ନବରୋଳା ହିନ୍ଦୁ ଅଧ୍ୟୁଷିତ ଅଞ୍ଚଳ ।

୩ । ବିଭିନ୍ନ ରଙ୍ଗର, ଆକାରର, ସ୍ୱାଦଯୁକ୍ତ ଆମ୍ବ ଏଠାରେ ମିଳେ । ଆମ୍ବର ନାମ—ଗୁଣସାଗର, କ୍ଷମାସାଗର, କ୍ଷମା ଡାସିଆ, ହୁଙ୍କାଲଡ଼ୁଆ, କଣ୍ଟକସୁନ୍ଦରୀ । ଲୁହାମୁଣ୍ଡା, ହୁଙ୍କାଲଡ଼ୁଆ, କଳା-କୃଷ୍ଣ ଆମ୍ବରୁ ଆଚ୍ଚର କରାଯାଏ ।

୪ । ଏଠାକାର "ଜମିଦାର" ରାଜା ସମ୍ମାନ ପାଆନ୍ତି । ଜମିଦାରଙ୍କ ବଂଶଧରମାନେ ନିଜକୁ ଭୂସ୍ୱାମୀ ବୋଲି ପରିଚିତ କରନ୍ତି । ଏହାଙ୍କ ସମ୍ପତ୍ତିକୁ ଭଇଭାଗ ବୋଲି କୁହାଯାଏ ।

୫ । ଉତ୍କଳର ୩ୟ ଏମ୍. ଏ. ଶ୍ରୀ ଅଭିରାମ ଭଞ୍ଜଙ୍କ ଜନ୍ମସ୍ଥଳୀ । ୧୮୮୦ ସେପ୍ଟେମ୍ବର ଜନ୍ମ । ଉତ୍କଳ ସମ୍ମିଳନୀର ସମ୍ପାଦକ ।

୬ । ପରିମଳା କାବ୍ୟ, ପଥ୍ୟାପଥ୍ୟ ବିନିଶ୍ଚୟ, କବିରାଜ ଶାସ୍ତ୍ର ଓ ରାମକାବ୍ୟ ହଳଦିଆର ଲେଖକ ତଥା ସେଣ ବୈଦ୍ୟଙ୍କ କୁଣ୍ଡ । ସେ ଲଙ୍କା ଯାଇ ବିଭୀଷଣଙ୍କୁ ଆରୋଗ୍ୟ କରିଥିଲେ ।

୭ । ବସନ୍ତ ମୌଜାରେ "ଡାଧାଳ ରାଜା" ବସନ୍ତ ଋତୁ ଭୋଗପାଇଁ ଏଠାକୁ ଆସନ୍ତି । ସ୍ମରଣିକା ସ୍ୱରୂପ ଗଡ଼ଦ୍ୱାର, ଏକ ନଳକୂଅ ଓ ଗଡ଼ପୋଖରୀର ଧ୍ୱଂସାବଶେଷ ପରିଦୃଷ୍ଟ ହୁଏ ।

୮ । କୁଆପୁଟ ମୌଜାର 'ରସ' ୧୮୪୦-୧୯୪୦ ଶତାବ୍ଦୀ ଧରି ଚମକ ସୃଷ୍ଟି କରିଥିଲା ।

୯ । ଏଠାର "ବାଉଶି ଠାକୁରାଣୀ" ପ୍ରସନ୍ନ ହୋଇ ଭବିଷ୍ୟତବାଣୀ ଶୁଣାଉଥିଲେ । ବାଡ଼ି ସହର ସାହୁର ଶ୍ରୀ ସଦେଇ ଦେହୁରୀ ଓ ଦଣ୍ଡେଇ ସାହୁର ଶ୍ରୀ ମଙ୍ଗୁଳ ସ୍ୱାଇଁ କାଳେଶୀ ଥିଲେ ।

୧୦ । କାଷ୍ଠ, ପ୍ରସ୍ତର ଓ ଧାତୁ "ମୂର୍ତ୍ତି" "ପ୍ରଭା" "ତ୍ରିଶୂଳ" ଗଠନରେ କୁଆପୁଟର ମୂର୍ତ୍ତିକାରମାନେ ସୁନାମ ଅର୍ଜନ କରିଛନ୍ତି ।

୧୧ । ଗୋଟିଏ ବିମାନରେ ଶ୍ରୀ ଶ୍ରୀ ବାଲୁଙ୍କେଶ୍ୱର, ଶ୍ରୀ ଶ୍ରୀ ନୀଳକଣ୍ଠ, ଶ୍ରୀ ଶ୍ରୀ ଲୋକନାଥ ଓ ଶ୍ରୀ ଶ୍ରୀ ବିଶ୍ୱନାଥ, ଅନ୍ୟଟିରେ ଶ୍ରୀ ଶ୍ରୀ ରଘୁନାଥ ଓ ଶ୍ରୀ ଶ୍ରୀ ମଦନମୋହନ, ଶ୍ରୀ ଶ୍ରୀ ପ୍ରସନ୍ନମଣି ପାଞ୍ଚମୌଜାରେ ଦୋଳ ସୁଚେଧା ଭୋଗ ଖାଆନ୍ତି ।

୧୨ । ତେଲଙ୍ଗିବାଦ୍ୟ, ଆଠଗଡ଼ ବାଜା, ମହୁରୀ, ଶଙ୍ଖ ବଜାରେ ଏ ଅଞ୍ଚଳର କଳାକାର କୃତିତ୍ତ୍ୱ ଅର୍ଜନ କରିଛନ୍ତି ।

୧୩ । ହଳଦିଆ ଆଗେ ପୁରୀଜିଲ୍ଲାର ଓ ଏବେ ଖୋରଧା ଜିଲ୍ଲାର (୧-୪-୧୯୯୩ରୁ ଖୋର୍ଦ୍ଧା ।) ଶେଷ ଗ୍ରାମ ।

୧୪ । ପାଞ୍ଚମୌଜାର ଲୋକେ ଗୋଟିଏ ସ୍ଥାନରେ ଦଶହରା ଓ ଦୋଳ-ପର୍ବ ପାଳନ କରନ୍ତି ।

୧୫ । ବନ୍ୟଜନ୍ତୁ ମାଂସ ନାଲିଖଜା ଓ ନଡ଼ିଆର ଅଡ଼ଙ୍ଗା ଏଠାକାର ଗୌରବ ବୃଦ୍ଧି କରେ ।

୧୬ । ନନ୍ଦନକାନନ ପରିସର ବୃଦ୍ଧି ହୋଇ ହଳଦିଆକୁ ସ୍ପର୍ଶ କରିଛି ।

## ହଳଦୀ ଗୁରୁ ଗୁରୁ

ଶ୍ରୀ ଜଗନ୍ନାଥ ଦାଶ, ଶ୍ରୀ ବ୍ରଜବନ୍ଧୁ ଦାଶ ଓ ଶ୍ରୀ ଦୀନବନ୍ଧୁ ଦାଶ ସଂସ୍କୃତଜ୍ଞ ଥିଲେ । ବ୍ରାହ୍ମଣ ଶାସନରେ "ଗୁରୁ" ବା "ଆପଣେ" ନାମରେ ଖ୍ୟାତଥିଲେ ।

ଶ୍ରୀ ମହାଦେବ ମିଶ୍ର ୫ ଲକ୍ଷ ଗାୟତ୍ରୀ କରିଥିଲେ । ଦେବୀ ସାଧକ ଥିଲେ । କ୍ଷୁଧାର୍ତ୍ତଙ୍କୁ ଖୁଆଇବା ପରେ ଭୋଜନ କରୁଥିଲେ ।

ଶ୍ରୀ ଆର୍ତ୍ତବନ୍ଧୁ ମିଶ୍ର ପୁରୀଜିଲ୍ଲାର ଧଉଳମୁହଁ ଓ ଓସଣାରେ ଟୋଲ କରି ସଂସ୍କୃତ ପ୍ରଚାର କରିଥିଲେ । ସେ ଭଲ ଶ୍ଳୋକ ବୋଲି ପାରୁଥିଲେ ।

ଶ୍ରୀ ଲକ୍ଷ୍ମଣ ଦାସ ବ୍ରାହ୍ମଣ ସାହିରେ କରଣ ବାସିନ୍ଦା । ପୁରାଣ ପ୍ରବୀଣ ଥିଲେ ।

ଶ୍ରୀ ଦୟାନିଧି ମିଶ୍ର ରାଜ ପରିବାରରେ ବୈବାହିକ ସମ୍ପର୍କ ସ୍ଥିର କରୁଥିଲେ । ଅନେକ ରାଜାଙ୍କଠାରୁ କୁଣ୍ଡଳ ପ୍ରାପ୍ତ ହୋଇଥିଲେ ।

ଶ୍ରୀ ଉମେଶଚନ୍ଦ୍ର ଭଞ୍ଜ, ଶିଶୁ ସାହିତ୍ୟ ପାଇଁ ରାଜ୍ୟ ପୁରସ୍କାର ଲାଭ କରିଛନ୍ତି । ଶ୍ରୀ କୁଳମଣି ମିଶ୍ର ପାଞ୍ଜି ପ୍ରସ୍ତୁତ କରୁଥିଲେ । ୧୯୮୫ରେ ରାଷ୍ଟ୍ରପତି ପୁରସ୍କାର ଲାଭ କରିଥିଲେ । ପୁରୀରେ ଶ୍ରୀ ଜଗନ୍ନାଥ ବେଦ ପାଠଶାଳା କରିଥିଲେ । ସଂସ୍କୃତ କଲେଜ ଓ ଶ୍ରୀ ଜଗନ୍ନାଥ ବିଶ୍ୱବିଦ୍ୟା-ଳୟର ଅଧ୍ୟାପକ ଥିଲେ ।

ଶ୍ରୀ ବୈରାଗୀ ମିଶ୍ର ଆଦର୍ଶ ସଂସ୍କୃତ ଶିକ୍ଷକ ଥିଲେ । ସେ ୧୯୬୭ରେ ରାଜ୍ୟ ସରକାର ପୁରସ୍କାର ପାଇଥିଲେ । ଶ୍ରୀ ଅଲେଖ ଦାଶ କଣାସ ହାଇସ୍କୁଲ ଓ ଦଧିମାଛଗାଡ଼ିଆ ହାଇସ୍କୁଲରେ ୩୬ ବର୍ଷ ପ୍ରଧାନଶିକ୍ଷକତା କରି ୧୯୯୪ରେ ଆଦର୍ଶ ଶିକ୍ଷକ ପୁରସ୍କାର ଲାଭ କରିଛନ୍ତି ।

## ହରିଦ୍ରା ଦୁର୍ଗାଧିପତି

### ବାଂଝିମାଇପୀର କ' ସମ୍ପତ୍ତି
### ହଳଦୀ କାଠୁଆ କଜଳପାତି

୧ । ନୂତନଙ୍କ ଅଭିଷେକ ପ୍ରଥା ଚାଲିଲା । ପୌଷପୂର୍ଣ୍ଣିମାରେ ପୁଷ୍ୟାଭିଷେକ ଦର୍ଶନ ପାଇଁ ରାଜା ପ୍ରସନ୍ନମଣିଙ୍କ ନିକଟକୁ ଗଲେ । ଗହ୍ମା ପୂର୍ଣ୍ଣିମାରେ ବ୍ରାହ୍ମଣମାନେ ପଇତା ପିନ୍ଧାଇଲେ ।

୨ । ରାଜପରିବାରରେ ପୁଅ—ଯୁବରାଜ,ଝିଅ—ଜେମା, ସ୍ତ୍ରୀ—ରାଣୀ, ପ୍ରଥମ ସ୍ତ୍ରୀ—ପାଟମହାଦେଇ ନାମରେ ସମ୍ବୋଧିତ ହେଲେ । ଦାସ, ଦାସୀ ଖଟିଲେ । ବଜେ, ମଣୋହି, ଠା, ପାଣିଧି, ଶୁକେଇ, ପହଡ଼, ହଜୁର, ମଣିମା, ଘୁମ୍ନ ଶବ୍ଦ ପ୍ରଚଳିତ ହେଲା । ରାଜାଙ୍କର ବାସସ୍ଥଳୀ ନହର, ଜଆସ, ଗଡ଼, ରାଜବାଟି ବୋଲାଇଲା । ନିମନ୍ତ୍ରଣରେ ହରିଦ୍ରା ଦୁର୍ଗାଧିପତି ଶବ୍ଦ ପ୍ରୟୋଗ ହେଲା ।

ରାଜାଙ୍କ ବଜେବେଳେ ଛତି, ଚାମର, କାହାଳୀ, ଖୁଣ୍ଟ ବେହେଲା କାର୍ଯ୍ୟ କଲେ । ଭାଟମାନେ ପ୍ରଶଂସା ଗାନ କଲେ । ମନ୍ଦିର, ଜଳାଶୟ ପ୍ରତିଷ୍ଠାରେ ହୋମରେ ରାଜା କର୍ତ୍ତା ହେଲେ ।

୩ । ବ୍ରାହ୍ମଣମାନେ ରାଜଆଶୀର୍ବାଦ ଗାନ କଲେ । ମଙ୍ଗଳ କାର୍ଯ୍ୟରେ ରାଜନିମନ୍ତ୍ରଣ ହେଲା । ମୃତାହରେ ରାଜାଙ୍କ ଦୁଆରେ ତେଲ ଦେଖାଗଲା ।

୪ । ଦୋଳ ବୁଲେଶ ରାଜବାଟିରୁ ଆରମ୍ଭ ହେଲା । ଗୁଣ ଶିବ, ରଘୁନାଥ, ପ୍ରସନ୍ନମଣି ରାଜବାଟିରେ ରୁଣ୍ଡ ହେଲେ । ରାଜବାଟିରେ କନକ ଦୁର୍ଗା ପୂଜାପାଇଲେ । ଦଶହରାକୁ ଷୋଳ ପର୍ବ ପାଳିତ ହେଲା । ମୌଜମାନଙ୍କରେ ଖଣ୍ଡା ଭୋଗ ବଣ୍ଟାଗଲା । ଦଶହରା ଓ ଦୋଳରେ ରାଜା ଦଶହରା ପଡ଼ିଆକୁ ସଳଟଣରେ ଗଲେ ।

୫। ପ୍ରଜାମାନେ ଭେଟି ଦେଲେ। ବନ। ପାଶ୍ୱଶ୍ରମିକରେ ଆଦିବାସୀ-
ମାନେ ରଜାଙ୍କର ବେଠିବେଗାର ଖଟିଲେ। ନିଜ ହାତରୁ ଖାଇ
କାମ କଲେ।

୬। ରଜାଙ୍କ ଦୁଆରେ ବଉଳ ଗଛ ଥାଏ। ପିଆଦା ପ୍ରଜାଙ୍କୁ ଡାକି-
ଯିବା ବେଳେ ଏକ ବଉଳପତ୍ର ସଙ୍ଗରେ ନେଇଥାଏ। ଯାହା
ଦୁଆରେ ବଉଳ ପତ୍ର ପଡ଼େ ରଜଦଣ୍ଡ ଉପୁରେ କାନ୍ଦବୋବା
ଆରମ୍ଭ ହୁଏ।

୭। ରାଜ୍ୟାର ନିଃସନ୍ତାନ ହେଲେ, ରଜା ସମ୍ପତ୍ତି ନେଲେ।

୮। ଚଉଷ, ବାକି, ବଡ଼ମ୍ଭା, ଚକଟିରେ ରଜପରିବାରରେ ବନ୍ଧୁତା
ହେଲା।

୯। ସୁନଅାଁରେ ଗଜପତିଙ୍କୁ ଭେଟି ଦିଆଗଲା।

୧୦। ଆମ୍ବଗଛ ବଗିଚ୍ଚାରେ ଧାଡ଼ିରେ ଲଗାହେଲା। ପହିଲି ପାଚିଲା
ଆମ୍ବ ଭୋଗକରି ବ୍ରାହ୍ମଣଙ୍କୁ ଦିଆଗଲା।

୧୧। ଜଙ୍ଗଲର ଗଛ, ପଶୁପକ୍ଷୀ ଓ ନଈପୋଖରୀର ପାଣି ତଥା ମାଛ
ରଜାଙ୍କର।

୧୨। ରଜା ଧନାଢ୍ୟ ଥିବାରୁ ଶୂନ୍ୟଗାଡ଼ି, କାରୁ ଓ ଜିପ୍ ଚଢ଼ିଲେ।

୧୩। ସଂସ୍କୃତ ଟୋଲଟିଏ କରି ସଂସ୍କୃତ ସମ୍ପନ୍ନ ହେଲେ।

୧୪। ଅଣି ଛଣିଙ୍କ ବଂଶ ସାତଘର ହେଲେ। କାର୍ତ୍ତିକ ପୂର୍ଣ୍ଣିମାରେ
ବ୍ରାହ୍ମଣଙ୍କୁ ୭ଟି ସଂସ୍କ ମିଳିଲା। ରଜାଙ୍କ ବାସସ୍ଥାନ ପାହାଡ଼ ତଳେ
ରହିବାକୁ ପୁରୁଣାଗଡ଼ରୁ ସ୍ଥାନାନ୍ତରିତ ହେଲେ।

୧୫। ଗ୍ରାମଦେବୀ (ବାଉରୀ) ପ୍ରସନ୍ନ ହୋଇ ରଜାଙ୍କୁ ଖଣ୍ଡାଦାନଅା
ସମ୍ବୋଧନ କଲେ।

୧୬। ରଜାଙ୍କ ଶୁଦ୍ଧିକ୍ରିୟା ବଡ଼ପୋଖରୀ (କୁଆପୁଟ)ରେ ହେଲା।

## ମନ୍ତବ୍ୟ

୧ । ଛତିଶ ଗଡ଼ଜାତ—ଖଣ୍ଡପଡ଼ା, ଦଶପଲ୍ଲା, ନୟାଗଡ଼, କଳାହାଣ୍ଡି, ଢେଙ୍କାନାଳ ଆଦି ମଧ୍ୟରେ ହଳଦିଆର ସ୍ଥାନ ନାହିଁ ।

୨ । ୧୮୧୭ରେ ପୁରୀଜିଲ୍ଲା'ର ହଳଦିଆ ଓ ମଳପଡ଼ା ଜମିଦାରୀ ଇଂରେଜ ସରକାରଙ୍କ ସ୍ୱୀକୃତି ଲାଭ କଲେ । ରାଜପଦ କେବେ ସୃଷ୍ଟି ହେଲା ?

୩ । ରାଜାଙ୍କର ଜ୍ୟେଷ୍ଠ ସନ୍ତାନ ଗାଦିନସୀନ ହୁଅନ୍ତି । ଅନ୍ୟ ପୁତ୍ରମାନେ ସମ୍ପତ୍ତି ନେଇ ବାହାରେ ରହନ୍ତି । ମାତ୍ର ହଳଦିଆରେ ଭାଇଭାଗ ପ୍ରଥା ପ୍ରଚଳିତ ଅଛି ।

୪ । ହଳଦିଆ ମୁଖ୍ୟ ନିଜ ନାମ ସ୍ୱାକ୍ଷରରେ ଜମିଦାର ଶବ୍ଦ ଯୋଡ଼ନ୍ତି ।

୫ । ଗଡ଼ଜାତ ରାଜାଙ୍କ Ruling Chief ବା Ruling whip ଏଠାରେ ନଥିଲେ । ପ୍ରାଣଦଣ୍ଡ ବା ନିର୍ବାସନ ଦଣ୍ଡ ଏଠାରେ ନଥିଲା ।

## ଜମିଦାର

ହଳଦିଆର କ୍ଷତ୍ରିୟମାନେ ନିଜକୁ ମୟୂରଭଞ୍ଜୀୟ ବୋଲି ପରିଚୟ ଦିଅନ୍ତି । ଅଣି ଭଞ୍ଜ ଓ ଛଣି ଭଞ୍ଜ ହଳଦିଆରେ ରହିଲେ । ବଡ଼ଭାଇଙ୍କ ଅଂଶକୁ ରାଜା ବା ଜମିଦାର କୁହାଗଲା । ସାନଭାଇଙ୍କ ଅଂଶ ଭୂସ୍ୱାମୀ ନାମରେ ପରିଚିତ ହେଲେ । ଭୂସ୍ୱାମୀଙ୍କ ବଂଶ ବୃଦ୍ଧି ହୋଇ ଏବେ ଶତାଧିକ ଘର ହୋଇଛି । ଜମିଦାରଙ୍କ ଉପାଧି ନାମ ପୂର୍ବରୁ 'ଜମିଦାର', ପ୍ରାନ୍ତରେ ଷାରବର ଜଗଦେବ । ରାଜା ଓ ଭୂସ୍ୱାମୀ ବଶିଷ୍ଠ ଗୋତ୍ରୀୟ । ଜୁଡିକିଆ ଓ ମୃତ୍ତିକିଆ ଏବେ ବି ସମସ୍ତଙ୍କଠାରେ ଲାଗୁଛି । ଗୋଟିଏ ପରିବାର । ବିଧାର ସାଙ୍ଗିଆ ମଧ୍ୟ ଭଞ୍ଜ ପରିବାରରେ ଅଛି ।

ହଳଦିଆ ଓ ମଳପଡ଼ା ଜମିଦାରୀ ୧୮୧୭ ମସିହାରେ ଇଂରେଜମାନଙ୍କଦ୍ୱାରା ସ୍ୱୀକୃତ ହୋଇଛି । ଏହି ପରିବାରରୁ ଖେଡ଼ଙ୍ଗ ବକ୍ସିଙ୍କ ଗାଦିକୁ ତିନିପୁରୁଷ ଧରି ପୋଷ୍ୟପୁତ୍ର ଯାଇଛନ୍ତି । ଖେଡ଼ଙ୍ଗ ଖଣ୍ଡାୟତ ଗାଦି । ତେଣୁ ଖଣ୍ଡାୟତ କ୍ଷତ୍ରିୟ ସମ୍ପ୍ରଦାୟର ସମ୍ମିଶ୍ରଣ ହୋଇଛି ।

## ଜମିଦାର ବର୍ଗ :

ହରଦ୍ୱାଧିପତଃ ଶ୍ରୀମାନ୍ ଜଗନ୍ନାଥାଭିଧୋନୃପଃ
ତତ୍ପୁତ୍ରଶ୍ଚୈକ ବ୍ରହ୍ମାଦୋ ଗୋପୀନାଥସ୍ତୁ ତତ୍ ସୁତଃ ॥
ତସ୍ୟ ପୁତ୍ରଶ୍ଚ ଭଗବାସ୍ତତ୍ପୁତ୍ରଃ ଶ୍ୟାମସୁନ୍ଦରଃ
ତତ୍ପୁତ୍ରଃ କୃଷ୍ଣଚନ୍ଦ୍ରଶ୍ଚ ଭଞ୍ଜବଂଶ ସମୁଦ୍ଭବଃ
ପୀତବାସଶ୍ଚ ତତ୍ପୁତ୍ରଃ କୃତାନନ୍ତ ଯଦ୍ଭୂତଃ
ପ୍ରସାଦଂ ରଘୁନାଥସ୍ୟ ତଦନୁଗ୍ରହକାଙ୍କ୍ଷସ୍ୱା ॥

ଶ୍ରୀ ଜଗନ୍ନାଥ ଭଞ୍ଜ, ଶ୍ରୀ ଭଗବାନ ଭଞ୍ଜ, ଶ୍ରୀ ଶ୍ୟାମସୁନ୍ଦର ଭଞ୍ଜ, ଶ୍ରୀ କୃଷ୍ଣଚନ୍ଦ୍ର ଭଞ୍ଜ, ଶ୍ରୀ ପୀତବାସ ଭଞ୍ଜ, ଶ୍ରୀ ରଘୁନାଥ ଭଞ୍ଜ, ଶ୍ରୀ ନାରାୟଣ ଭଞ୍ଜ, ଶ୍ରୀ ଚନ୍ଦ୍ରଶେଖର ଭଞ୍ଜ ।

ଶ୍ରୀ ରଘୁନାଥ ଭଞ୍ଜ ୱାରବର ଜଗଦେବଙ୍କ ଅମଳରେ ୧୯୫୩ରେ ଜମିଦାରୀ ଉଚ୍ଛେଦ ହେଲା । ଜମିଦାର କ୍ଷତିପୂରଣ ପାଇଲେ ।

ଏହି ଜମିଦାରୀର ପରମାୟୁ ୧୮୧୭-୧୯୫୩—ମାତ୍ର ୧୩୬ ବର୍ଷ । ଦେଖାଯାଏ ଇଂରେଜମାନେ ଓଡ଼ିଶା ଦଖଲର (୧୮୦୩) ଅର୍ଦ୍ଧ-ଶତାବ୍ଦୀ ପୂର୍ବରୁ ଶ୍ରୀ ଜଗନ୍ନାଥ ଭଞ୍ଜ ପ୍ରସିଦ୍ଧ ଥିଲେ । ଗୋଟିଏ ପୁରୁଷକୁ ଯଦି ୩୦ ବର୍ଷ ଧରାଯାଏ ତେବେ ପ୍ରାୟ ୨୦୦ ବର୍ଷର ପ୍ରତିଷ୍ଠିତ ବଂଶାବଳୀ ଅଟେ । ଶ୍ରୀ ଭଗବାନ ଭଞ୍ଜଙ୍କ ନାମାନୁସାରେ ଭଗବାନପୁର ଶାସନ ନାମକରଣ ହୋଇଛି ।

ଶ୍ରୀ ଶ୍ୟାମସୁନ୍ଦର ଭଞ୍ଜ ରସକ୍ରୀଡ଼ାର ରଚୟିତା ଥିଲେ । ତାଙ୍କର ପ୍ରଭାବରେ କୁଆପୁଟରେ ରସ ସଂସ୍କୃତି ଗଢ଼ିଉଠିଥିଲା । ସେ ପାଇକ ବିଦ୍ରୋହ ସମୟରେ ସକ୍ରିୟ ଥିଲେ । କୁବଡ଼ମଲ୍ଲ ଦେବାନ୍ ଶ୍ରୀ କୃଷ୍ଣଚନ୍ଦ୍ର ମର୍ଦ୍ଦରାଜ ଭ୍ରମରବର ରାୟଙ୍କୁ ଇଂରେଜ ସରକାରଙ୍କୁ ଧରାଇ ଦେଇଥିଲେ । ଆର୍ଥିକ ସାହାଯ୍ୟ ଲାଭ କରିଥିଲେ ।

ଶ୍ରୀ କୃଷ୍ଣଚନ୍ଦ୍ର ଅଳ୍ପାୟୁ ଥିଲେ । ଶ୍ରୀ ପୀତବାସ ଭଞ୍ଜଙ୍କ (୧୮୭୫-୧୯୩୯) ଅମଳରେ ଧନ ଦୌଲତ ବଢ଼ିବାର ଚରମ ସୀମାରେ ପହଞ୍ଚିଲା । ସେ ଶାମ, ଦାମ, ଦଣ୍ଡ ଓ ଭେଦର ପ୍ରବର୍ତ୍ତନ କରି ଧନ ବଢ଼ାଇଲେ । ବେଠି ବେଗାରି ସୃଷ୍ଟି କଲେ । ୧୯୩୯ରେ କୋଠାଘର

କଲେ । ତରଡ଼ା, ବଡ଼ମ୍ବାରେ ବନ୍ଧୁ କରି ନିଜର ମର୍ଯ୍ୟାଦା ବଢ଼ାଇଥିଲେ । ସେ ଉଆସ ଦୁଆରେ ରଘୁନାଥ ମନ୍ଦିର ନିର୍ମାଣ ଓ ପ୍ରତିଷ୍ଠା କଲେ । ଖୋର୍ଦ୍ଧାରେ ଘର କଲେ । (ଫାଟୁାର ଷ୍ଟେସନ ଥିଲା) । ଏହାଙ୍କ ପ୍ରଥମ ସ୍ତ୍ରୀ ଜଳାଶୟମାନ କରାଇଲେ । ୧୯୩୯ରେ ୭୫ ବର୍ଷ ବୟସରେ ସେ କଟକ ବଡ଼ ଡାକ୍ତରଖାନାରୁ ଫେରିବା ବାଟରେ ଗ୍ଲେଟିଯୋଡ଼ (ଟାଙ୍ଗିଆ ପଡ଼ାରେ) ଶେଷ ନିଃଶ୍ୱାସ ତ୍ୟାଗ କଲେ । ସେ ବଡ଼ ସରଳ ଜୀବନଯାପନ କରୁଥିଲେ । ଖର୍ଚ୍ଚ ଓ ପୋଷାକରେ ମିତବ୍ୟୟୀ ତଥା ସଂଯତ ଥିଲେ । ହଳଦିଆରେ ତଥା ବାହାର ମୌଜାରେ ରେତଙ୍ଗ, ତୁଳସୀପୁର, ନରଗାଙ୍ଗରେ ଭୂସମ୍ପତ୍ତି କରିଥିଲେ । ଦୋଳ ଖେଳରେ କୁଆପୁଟ ଓ ଗଡ଼ ବୁଲୁ ଥିଲେ । ବ୍ରାହ୍ମଣ ଶାସନକୁ ଶାସ୍ତ୍ରଚର୍ଚ୍ଚା ଓ ପରାମର୍ଶ ପାଇଁ ବହୁଥର ଆସୁଥିଲେ । ବହୁବାର ବ୍ରାହ୍ମଣଙ୍କ ଦ୍ୱାରା ପୁରାଣପାଠ ଓ ସପ୍ତା ପାଳନ କରୁଥିଲେ ।

ଶ୍ୟାମସୁନ୍ଦର

- ପୀତବାସ — ସ୍ତ୍ରୀ
  - ସୁଭଦ୍ରା (ତରଡ଼ା)
    - ରଘୁନାଥ
  - ପଦ୍ମାବତୀ (ବାଙ୍କୀ)
  - ଜାନୁମତୀ (ବାଙ୍କୀ)
    - ପୁତ୍ର ଲକ୍ଷ୍ମଣ, ପୌର୍ଣ୍ଣମାସୀ, ଅନ୍ନପୂର୍ଣ୍ଣା । (ବୋଡ଼ଙ୍ଗବନ୍ଦ୍ରସି)
- ହଳଧର — ବୋଡ଼ଙ୍ଗ, ପୋଷ୍ୟପୁତ୍ର, ଅକାଳ ମୃତ୍ୟୁ
- ଲୋକନାଥ — ବୋଡ଼ଙ୍ଗ, ପୋଷ୍ୟପୁତ୍ର, ଅକାଳ ମୃତ୍ୟୁ
- ରାମଚନ୍ଦ୍ର ବଧାର — ସ୍ତ୍ରୀ-ଇନ୍ଦ୍ରମଣି
  - ଗୁଣନିଧି, ଶ୍ରୀମତୀ

ସୁଭଦ୍ରା ନିଃସନ୍ତାନ ଥିଲେ । ପାଟ ମହାଦେଇ ୧୮ଟି କୂଅ ଖୋଳାଇଥିଲେ । ଏହାଙ୍କ ଇଚ୍ଛାନୁସାରେ ରାଜନବରର ପ୍ରବେଶ ପଥରେ ଶ୍ରୀ ଶ୍ରୀ ରଘୁନାଥ ମନ୍ଦିର ନିର୍ମିତ ହେଲା ।

ପଦ୍ମାବତୀ ଓ ଭାନୁମତୀ ବାଙ୍କୀ ରାଜକନ୍ୟା ଦୁଇ ଭଉଣୀ । ପଦ୍ମାବତୀଙ୍କର ଅକାଳ ବିୟୋଗ ପରେ ଭାନୁମତୀ ଆସିଥିଲେ । ପିତା ବାଙ୍କୀ ରାଜା ଶ୍ରୀ ବିଶ୍ୱନାଥ ଶ୍ରୀଚନ୍ଦନ ମହାପାତ୍ରଙ୍କ କନ୍ୟା ଏ ଦୁହେଁ । ଛଅଦିନର ଶିଶୁପୁତ୍ର ରଘୁନାଥଙ୍କୁ ଛାଡ଼ି ୧୯୦୫ରେ ପଦ୍ମାବତୀ ଇହଲୀଳା ସାଙ୍ଗ କଲେ ।

ପ୍ରକାଶ ଥାଉକି ପୀତବାସଙ୍କ କନ୍ୟା ପୌର୍ଣ୍ଣମାସୀ ବାଙ୍କୀରେ ଓ ଅନ୍ନପୂର୍ଣ୍ଣା ଅମ୍ବାଟକାରେ ବିବାହ କରିଥିଲେ ।

# ରଘୁଚରିତ

ଜମିଦାର ଶ୍ରୀ ରଘୁନାଥ ଭଞ୍ଜ ଖାରବର ଜଗଦେବ ୧୯୦୫ରେ ଜନ୍ମ ହୋଇଥିଲେ । ଜନ୍ମର ଛଅଦିନଠାରେ ମାତୃସ୍ଥାନ ହେଲେ । ମାଉସୀମା'ଙ୍କ ଦ୍ୱାରା ପାଳିତ ହେଲେ । ଖୋରଧା ହାଇସ୍କୁଲରେ ଦଶମ ଶ୍ରେଣୀଯାଏଁ ପଢ଼ିଲେ । ଏହାଙ୍କୁ "ଗଡ୍ଡେଲ" କୁହାଯାଉଥିଲା । ରଘୁନାଥ ଓ ଲକ୍ଷ୍ମଣଙ୍କ ପଢ଼ାପାଇଁ ପୀତବାସ ଖୋରଧାରେ ଘର କିଣିଥିଲେ । ପୂଜାଶ୍ୱ, ଶ୍ୱକର ନିଯୁକ୍ତ କରି ପିଲାଙ୍କୁ ପଢ଼ାଇଥିଲେ । ଶ୍ରୀ ରଘୁନାଥ ଖୋରଧା ହାଇସ୍କୁଲରେ ଦଶମ ଶ୍ରେଣୀଯାଏଁ ପଢ଼ିଥିଲେ ।

ଶ୍ରୀ ରଘୁନାଥ ୧୯୧୪ରେ ବ୍ରତ ତଥା ୧୯୨୩ରେ ବିବାହ ହୋଇଥିଲେ । ବଡ଼ମ୍ବା ରାଜା ଶ୍ରୀ ବିଶ୍ୱମ୍ଭର ଖାରବର ମଙ୍ଗରାଜ ମହାପାତ୍ରଙ୍କ ଜ୍ୟେଷ୍ଠାକନ୍ୟା ରାସେଶ୍ୱରୀଙ୍କ ପାଣିଗ୍ରହଣ କରିଥିଲେ ।

ଶ୍ରୀମତୀ ରାସେଶ୍ୱରୀଙ୍କ ଆଗମନରେ ହଳଦିଆ ଧନଧାନ୍ୟ ପୂର୍ଣ୍ଣ ହେଲା । ସେ ସ୍ୱର୍ଗୀୟ ସନ୍ତାନସନ୍ତତିଙ୍କ ଜନନୀ ଥିଲେ ।

ଶ୍ରୀ ନାରାୟଣ ଭଞ୍ଜ (ଫକୀର) ୧୯୨୭, ବ୍ରତ ୧୯୩୭, ବିବାହ—୧୯୪୭ ଶିକଟିରାଜା ଗୌରଚନ୍ଦ୍ର ରାଜେନ୍ଦ୍ରଦେବଙ୍କ କନ୍ୟା ଶର୍ମିଳତା ଦେବୀଙ୍କ ପାଣିଗ୍ରହଣ କଲେ ।

ଶ୍ରୀ ଭଗବାନ ଭଞ୍ଜ (ବନ)—୧୯୨୯ ବଣଡ଼ ପୋଷ୍ୟପୁତ୍ର ହେଲେ
ଶ୍ରୀମତୀ ଲକ୍ଷ୍ମୀପ୍ରିୟା—୧୯୩୩ ସ୍ୱାମୀ ଶ୍ରୀ ବ୍ରଜକିଶୋର ସିଂହ
ମନୋହରପୁର

ଶ୍ରୀମତୀ ହରପ୍ରିୟା—୧୯୩୫ ସ୍ୱାମୀ ଶ୍ରୀ କୃଷ୍ଣଚନ୍ଦ୍ର ଦେବ
( ୧୯୯୫ମୃତ୍ୟୁ )—ରମ୍ମା

ରାସେଶ୍ୱରୀ ପତିପ୍ରାଣା, ଧାର୍ମିକା ଥିଲେ । ଦେବତା ବ୍ରାହ୍ମଣଠାରେ ଅଚଳା ଭକ୍ତି ପ୍ରଦର୍ଶନ କରୁଥିଲେ । ଏହି ଅହ୍ୟସୁଲକ୍ଷଣୀ ୧୯୪୩ରେ ଅକାଳ ମୃତ୍ୟୁ ବରଣ କଲେ ।

୧୯୪୪ରେ ଶ୍ରୀ ରଘୁନାଥ ଗଞ୍ଜାମ ପାଲୁର ରାଜା କୁଞ୍ଜବିହାରୀ ଗଜେନ୍ଦ୍ର ଦେବ ଓ ପାର୍ବତୀଙ୍କ କନ୍ୟା ପ୍ରଫୁଲ୍ଲ କୁମାରୀଙ୍କୁ (୧୪ବର୍ଷ) ବିବାହ କଲେ । ବିବାହ ଉତ୍ସବ ଭଗବାନପୁର ଶାସନର ପୁରୋଧା

ଶ୍ରୀ ରଘୁନାଥ ମିଶ୍ରଙ୍କ ବାସଗୃହରେ ହୋଇଥିଲା । ଏହାଙ୍କ ଗର୍ଭରୁ ପାଞ୍ଚଗୋଟି କନ୍ୟା ଜନ୍ମଗ୍ରହଣ କରିଥିଲେ ।

ଶ୍ରୀମତୀ ଶରତ କୁମାରୀ—ଶ୍ରୀ ଲଳିତ କିଶୋର ଭଞ୍ଜ—
ଝିଞ୍ଜିରିକାଟ, ଗଞ୍ଜାମ

ଶ୍ରୀମତୀ ବସନ୍ତ କୁମାରୀ—ଶ୍ରୀ ସୁକୁମାର ରାଜ—ମାଉଣ୍ଟପଲ୍ଲୀ—
ସାଲୁର, କୋରାପୁଟ

ଶ୍ରୀମତୀ ହେମନ୍ତ କୁମାରୀ—ଶ୍ରୀ ମୃତ୍ୟୁଞ୍ଜୟ ସିଂହ—ସୁକିନ୍ଦା, ଯାଜପୁର

ଶ୍ରୀମତୀ ବିଜୟା କୁମାରୀ—ଶ୍ରୀ ସନ୍ତୋଷ କୁମାର ସିଂହ, ଢେଙ୍କାନାଳ

ଶ୍ରୀମତୀ କୃଷ୍ଣାକୁମାରୀ—ଶ୍ରୀ ଜିତେନ୍ଦ୍ର କୁମାର ସିଂହ—ଖଣ୍ଡପଡ଼ା

## ହଲଦୀ ଚକ୍‌କଣ

ରଘୁନାଥ ଭଞ୍ଜ ଉଚ୍ଚମନା ଥିଲେ । ଖୁବ୍ ଶାନ୍ତଶିଷ୍ଟ । ଆଘାତ ପାଇଲେ ନାଗୁଣି ପରି ଚୋଟ ମାରୁଥିଲେ । ମୋକଦ୍ଦମା କରି ସର୍ବସ୍ୱାନ୍ତ କରୁଥିଲେ । ପକ୍ଷାନ୍ତରେ ତାଙ୍କୁ ଯେ ନିଜକୁ ସମର୍ପଣ କରୁଥିଲା ତାର ସମସ୍ତ ଦାୟିତ୍ୱ ସେ ବହନ କରୁଥିଲେ ।

ସେ ବଡ଼ ଧାର୍ମିକ ଥିଲେ । ହାରଦେଶରେ ଠାକୁରଙ୍କୁ ପ୍ରଣିପାତ କରି ଯାତ୍ରାରମ୍ଭ କରୁଥିଲେ । ସେ ପୁରୀ କୁଣ୍ଢାଇବେଣ୍ଟ ସାହି କୂର୍ମପଟି ଗଳିରେ ବାସସ୍ଥାନ ନିର୍ମାଣ କରିଥିଲେ । ସେଠାରେ ରହି ଶ୍ରୀକ୍ଷେତ୍ରରେ ସମସ୍ତ ପର୍ବ ଉପଭୋଗ କରୁଥିଲେ । ସେ ଶ୍ରୀକ୍ଷେତ୍ରରେ ପ୍ରାଣତ୍ୟାଗ କଲେ । ଏହି ପୁରୁଷୋତ୍ତମୀଙ୍କ ପାଇଁ ଶ୍ରୀମନ୍ଦିର ଅଗ୍ନି ମିଳିଥିଲା ।

ରାଜା ସ୍ୱାଭିମାନୀ ଥିଲେ । ନିଜକୁ ମୟୂରଭଞ୍ଜ ବଂଶୀୟ ବୋଲି ପରିଚିତ କରିବାକୁ ହଳଦିଆ ଉଆସ ଓ ପୁରୀ କୋଠାର ପ୍ରବେଶ ପଥରେ ମୟୂର ମୂର୍ତ୍ତି ବସାଇଥିଲେ । ନିଜ ପୋଷାକରେ ମୟୂର ଛାପ ରଖୁଥିଲେ ।

ବନ୍ଧୁବାନ୍ଧବ ତାଲିକା ଦେଖିଲେ ଜଣାଯାଏ ଯେ ରାଜ ପରିବାରରେ ବନ୍ଧୁତା ସ୍ଥାପନ କରିବା ଜୀବନର ବ୍ରତ ଥିଲା ।

ଓଡ଼ିଶାର ପ୍ରଥମ ଲାଟ୍ ସାର୍ ଜନ୍ ଅଷ୍ଟିନ୍ ହବାକଙ୍କୁ ପୁରୀ ଶ୍ରୀନହରରେ ବୃହତ ଭୋଜି ଦେଇଥିଲେ । ଏତଦ୍ଦ୍ୱାରା ହଳଦିଆର ଗୌରବ ବଢ଼ିଥିଲା ।

ସର୍ବଦା କାର୍ ବା ଜିପ୍ ବ୍ୟବହାର କରୁଥିଲେ ।

ସେ ଖୁବ୍ ଢେଙ୍ଗା ଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ଲଇଁ ପଡ଼ି ନ ଥିଲେ । ବହୁ ବିପଦର ସମ୍ମୁଖୀନ ହେଲେ ମଧ୍ୟ ଭାଙ୍ଗିପଡ଼ି ନ ଥିଲେ ।

ଘୃତ ବିନା କୁଭୋଜନକୁ ଧ୍ୟେୟ କରି ସେ ଘିଅ ବିନା ଖାଉ ନ ଥିଲେ । ପଣ ଚଉପଦ ବା ଗ୍ରାମଚରେ ଘିଅ ଖାଉଥିବା ଅଭ୍ୟାସ ଥିଲା ।

କେଉଁଆଡ଼େ ଗଲେ ସାହାଯ୍ୟକାରୀ ସଙ୍ଗରେ ନେଉଥିଲେ । ଉଭୟେ ସମାନ ଆହାର କରୁଥିଲେ ।

କଳାପ୍ରେମୀ ଓ ସାହିତ୍ୟାନୁରାଗୀ ରଘୁନାଥ ଉଆସରେ ପାଲା, ଉଦଣ୍ଡ, ଛଉନୃତ୍ୟ କରାଉଥିଲେ ।

ସ୍ୱରଜଣ କ୍ଷମତାପ୍ରାପ୍ତ ଏଜେଣ୍ଟ ଖଜଣା ଆଦାୟ କରୁଥିଲେ ।

ଖୋର୍ଦ୍ଧାରୁ ହଳଦିଆ ରିକ୍ସାରେ ଗଲେ ପାହାଡ଼ ଉଠାଣି ପୂର୍ବରୁ ରିକ୍ସା ଛଡା କରି ଚାଲିକରି ଯାଉଥିଲେ । ଏଥିରୁ ମାନବିକତା ଅନୁମେୟ ।

ନିଜ ସାନଭାଇ (ବେଉଡ଼ଙ୍କ ବକ୍ସି)ଙ୍କର ପଢ଼ା ବୁଝାଉଥିଲେ ଓ ବେଉଡ଼ଙ୍କ ସମ୍ଭାଳିଥିଲେ । ସାନଭାଇ ରେଭେନ୍ସା କଲେଜର ଇଂରାଜୀ ବିଭାଗ ମୁଖ୍ୟରୁ ଅବସର ନେଲେ ।

କୁଆପୁଟ ମୌଜାରେ ଏକ ଜମି ସରଜମିନ୍ ତଦନ୍ତ କରିବାକୁ ଏସ୍. ଡି. ଓ. ଶ୍ରୀ ରଘୁନାଥଙ୍କୁ କ୍ଷମତା ଦେଇଥିଲେ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ସଳାଖ ଅଟକାଉବାକୁ ଜଣେ ପ୍ରଜା ଶ୍ରୀ ଉଚ୍ଛବାନନ୍ଦ ସାମନ୍ତରାୟ ସଳାଖକୁ ଜୋରରେ ଆଘାତ କରିଥିଲେ । ତଦନ୍ତ ବାତିଲ କରି ଶ୍ରୀ ରଘୁନାଥ ଫେରିଥିଲେ । ଏସ୍. ଡି. ଓ.ଙ୍କୁ ରିପୋର୍ଟ କଲେ । ଏଥିରେ ପ୍ରତିବାଦୀଙ୍କୁ ଦଣ୍ଡସ୍ୱରୂପ ଜୋରିମାନା ହୋଇଥିଲା ।

ନିଜର କନ୍ୟାମାନଙ୍କୁ ଗୃହଶିକ୍ଷକ ରଖି ପଢ଼ାଇଥିଲେ । ସାଧାରଣ ସ୍କୁଲକୁ ଛାଡ଼ୁ ନ ଥିଲେ ।

ପୁତ୍ର କନ୍ୟାଙ୍କ ବିବାହ ବାସଗୃହରେ କରିଛନ୍ତି । ସେହି ସମୟରେ ସେ ବିବାହ ଉତ୍ସବମାନ କରାଇ ଉଚ୍ଚ ନୈତିକ ମାନର ପରିଚୟ



ହଳଦଆ ରଜା ରଘୁନାଥ ଭଞ୍ଜ



ଶ୍ରୀ ଶ୍ରୀ ବାଇଷ୍ଟ ଦେବୀଂ
ବାଢ଼ଣଢର ସାକ୍ଷୀ



ଭଗବାନପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର



ଶ୍ରୀ ଶ୍ରୀ ବାଲ୍ମୀକୀଶ୍ୱର ଦେବ ବଜେ, ଜୁଆପୁଟ



ଭଗବାନପୁର ଶାସନ ସଂସ୍କୃତ ଟୋଲ



ଶ୍ରୀ ଶ୍ରୀ ବାଉଁଶ ଦେବୀ
ବାଢ଼ଶହର ସାନ୍ଧ



ଭଗବାନପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର



ଶ୍ରୀ ଶ୍ରୀ ବାଲ୍ମୀକେଶ୍ୱର ଦେବ ଝଡେ, କୁଆପୁଟ



ଭଗବାନପୁର ଶାସନ ସଂସ୍କୃତ ଟୋଲ



ଶ୍ରୀ ଶ୍ରୀ ନୀଳକଣ୍ଠେଶ୍ୱର ଦେବ, ବଂଜେ ଜମସାଇ



ଗଉଣିଆ ଆମ୍ବଗଛ, କୁଆପୁଟ

ଦେଇଥିଲେ । ବଦାନ୍ୟାନୁରାଗୀ ଶ୍ରୀ ରଘୁନାଥ ହଳଦିଆରେ "ବାଦାମ ପଡ଼ିଆ"ରେ "ସରସ୍ୱତୀ ବିହାର" ପ୍ରତିଷ୍ଠା କରିଥିଲେ ।

ଗ୍ରାମ୍ୟ ପ୍ରଭାବରୁ ମୁକ୍ତ କରିବାକୁ ସେ ସ୍କୁଲକୁ ଏକ ନିର୍ଜନ ଜାଗାରେ ସ୍ଥାନାନ୍ତର କଲେ । ଶୁଭ ମୁହୂର୍ତ୍ତରେ ସ୍ଥାନଟି ବଛାଯାଇଥିବାରୁ ଏଠାରେ ପରବର୍ତ୍ତୀ ସମୟରେ ମି: ଇ: ସ୍କୁଲ, ହାଇସ୍କୁଲ ଓ କଲେଜ ହେଲା । ଏବର "ସରସ୍ୱତୀ ବିହାର" ଏବଂ ତତ୍ ସଂଲଗ୍ନ ବଜାର ରଘୁନାଥଙ୍କ ଦୂରଦୃଷ୍ଟିର ପରିଚୟସୂଚକ ।

ସେ ହଳଦିଆ ସଂସ୍କୃତ ଟୋଲ ପରେ ଭଗବାନପୁର ସଂସ୍କୃତ ଅନୁଷ୍ଠାନର ପ୍ରତିଷ୍ଠାତା ସମ୍ପାଦକ । ୩୦ ବର୍ଷ କାଳ ଏହି ଦାୟିତ୍ୱ ତୁଲାଇଥିଲେ । ପଣ୍ଡିତଙ୍କ ଖୋରାକପାଇଁ ବୃତ୍ତି ଟାଙ୍ଗିଥିଲେ । ବୈଦିକ ପଣ୍ଡିତଙ୍କ ସହ ଶାସ୍ତ୍ର ଆଲୋଚନା କରୁଥିଲେ ।

ଶାସନର ଶ୍ରୀ ମଧୁସୂଦନ ଦାଶଙ୍କ ପୁତ୍ର ପଢ଼ାପାଇଁ ପୂରା ଘରଟିକୁ ୧୦ବର୍ଷ କାଳ ବିନା ଭଡ଼ାରେ ଯାଚକରି ଛାଡ଼ି ଦେଇଥିଲେ । ଶ୍ରୀ ଦାଶ ସସ୍ତ୍ରୀକ ସେଠାରେ ରହି ପୁଅକୁ ପଢ଼ାଇଲେ ।

ଅନେକ ଶିକ୍ଷାନୁଷ୍ଠାନକୁ ଓ ଦରିଦ୍ର ମେଧାବୀ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ଦେଇଥିଲେ ।

ଏହି ଉଚ୍ଚମନାଙ୍କ ଜୀବନରେ—

ଯଦୈବ ରାଜ୍ୟେ କ୍ରିୟତେଽଭିଷେକ
ତଦୈବ ଯାତି ବ୍ୟସନେଷୁ ବୁଦ୍ଧିଃ
ଘଟାମ୍ବୁପାଣାଂ ଅଭିଷେକ କାଳେ
ସହାମ୍ଭସୌ ଆପଦମୁଦ୍‌ଗିରନ୍ତି ।

ଅଭିଷେକ ଦିନରୁ ଶନିଚଳନ ପରି ବିପଦ ମାଡ଼ି ଆସିଲା । ପିତାଙ୍କ ମୃତ୍ୟୁ, ପ୍ରାଣପ୍ରିୟା ପତ୍ନୀଙ୍କ ଅକାଳ ବିୟୋଗ ଓ ନିଜର ଶାରୀରିକ ଅସୁସ୍ଥତା ଉଗାରି ହେଲା । ସର୍ବୋପରି ପ୍ରଜା ଆନ୍ଦୋଳନ ଗଡ଼ି ଉଠିଲା ।

## ହଳଦିଆ ମେଳ

### ତତ୍କାଳୀନ ପରିସ୍ଥିତି :

ଦ୍ୱିତୀୟ ବିଶ୍ୱ ମହାସମର ୧୯୩୯ରୁ ଆରମ୍ଭ ହେଲା ଓ ୧୯୪୫ରେ ଶେଷ ହେଲା । ଏଥିରେ ବିଶ୍ୱ ଦୋହଲିଗଲା । ସମସ୍ତଙ୍କ ମୁଣ୍ଡ ଚହଲିଗଲା । ଆନ୍ତର୍ଜାତିକ ସଚେତନତା ଜାଗ୍ରତ ହେଲା ।

ଭାରତୀୟ ଜାତୀୟ କଂଗ୍ରେସ ୧୯୪୦ରେ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ନିଷ୍ପତ୍ତି ନେଲା । ମୁମ୍ବାଇ (ବମ୍ବେ) ଅଧିବେଶନରେ ଭାରତୀୟ ଜାତୀୟ କଂଗ୍ରେସ ଭାରତ ଛାଡ଼ ବିଦ୍ରୋହ ଘୋଷଣା କଲା ତା ୮ । ୮ । ୧୯୪୨ । ଜାତୀୟ ଜାଗରଣର ଉଦ୍ରେକ ହେଲା ।

୧୯୩୬ ମସିହା ଏପ୍ରିଲ ପହିଲାରେ ଓଡ଼ିଶା ରାଜ୍ୟ ସ୍ୱତନ୍ତ୍ର ପ୍ରଦେଶ ହେଲା । ରାଜ୍ୟର ଖାଡଗାଡ଼ ପୋଛି ସମାନ କରିବାକୁ ସମସ୍ତଙ୍କର କାମନା ରହିଲା । ସବୁଠାରେ ଗଣ ସଚେତନତା ବା ଜନ ଜାଗରଣ ପରିଲକ୍ଷିତ ହେଲା । ଲୋକେ ନିଜର ଅଭ୍ୟୁତ୍ଥାନ ଇଚ୍ଛା କଲେ ।

ତା ୧୦ । ୧୦ । ୧୯୩୮ରେ ଢେଙ୍କାନାଳ ଗଡ଼ଜାତର ପ୍ରଜା ଆନ୍ଦୋଳନରେ "ବାଜିରାଉତ" ନାମକ ୧୨ ବର୍ଷର ବାଳକ ଶହୀଦ ହେଲା । ଏହି ଢେଙ୍କାନାଳ ରାଜ୍ୟ ହଳଦିଆରୁ ମାତ୍ର ୪୦ କି: ମି: ଦୂରରେ । ଏଠାରେ ଲୋକେ ବାଜିରାଉତ ଭଳି ହେବାକୁ ପ୍ରୟାସ କଲେ ।

୧୯୩୯ରେ ରଣପୁର ପ୍ରଜାମେଳ ହେଲା । ତା ୫ । ୧ । ୩୯ରେ ବେଜଲ୍‌ଗେଟ ସାହେବଙ୍କୁ ଲୋକେ ପିଟିପିଟି ମାରିଦେଲେ । ଏଥିରେ ଶ୍ରୀ ରଘୁନାଥ ମହାନ୍ତି ଓ ଶ୍ରୀ ଦିବାକର ପରିଡ଼ା ଫାଶି ପାଇଲେ । ରଣପୁର ହଳଦିଆରୁ ମାତ୍ର ୩୦ କି: ମି: ଦୂର । ହଳଦିଆବାସିଏ ଏପରି କାର୍ଯ୍ୟକୁ ପସନ୍ଦ କଲେ ।

ପଡ଼ୋଶୀ ରାଜ୍ୟ ତମପଡ଼ାରେ ରାଜାଙ୍କ ମୃତ୍ୟୁ ହେବୁ ଓ ନାବାଳକ ରାଜା ଥିବାରୁ କୋର୍ଟ ଅଫ୍ ଓ୍ୱାର୍ଡ଼ସ ହେଲା । ଲୋକେ ଏହାକୁ ଛିପି ରଖିଲେ ।

ହଳଦିଆର ସୁପ୍ତ ଜନତା ଜାଗ୍ରତ ହେଲା । ଜମିଦାରଙ୍କ ଅନ୍ୟାୟ ଅତ୍ୟାଚାରକୁ ଆଉ ବରଦାସ୍ତ ନ କରିବାକୁ ଶପଥ ନେଲେ । ହଳଦିଆରେ ଯୁଦ୍ଧଭେରୀ ବାଜି ଉଠିଲା ।

## ଅଶାନ୍ତ ଚାଳିଶା

ଭୂଗୋଳରେ ନିୟତବାୟୁ ପ୍ରବାହ ପଶ୍ଚିମା ବାୟୁ ଦ୍ୱାରା ୪୦°-୪୯° ଦକ୍ଷିଣ ସମାକ୍ଷରେଖାରେ ପ୍ରବଳ ପବନ ବହେ । ତାକୁ ଗର୍ଜନଶୀଳ ଚାଳିଶା କହନ୍ତି । ରଘୁନାଥ ୧୯୩୯ ମସିହାରେ ପିତାଙ୍କ ମୃତ୍ୟୁ ପରେ ଚାଳିଶା ସହ ନିଜ ଜୀବନର ଚାଳିଶା ମଧ୍ୟରେ ବିପଦର ସମ୍ମୁଖୀନ ହେଲେ

୧ । ୧୯୪୦ରୁ ପ୍ରଜାମେଳି ।

୨ । ୧୯୪୩ରେ ସ୍ତ୍ରୀ ବିୟୋଗ ।

୩ । ୧୯୪୧ରୁ ଭଗନ୍ଦର ରୋଗରେ ଆକ୍ରାନ୍ତ ।

୪ । ୧୯୪୦-୪୭ ମୋକଦ୍ଦମା ମାନ ବ୍ୟତିବ୍ୟସ୍ତ କଲା ।

ବିପଦ ହୋଇ ଏଣେ ବିଗ୍ରହଧାରୀ ।
ଯୋଗୀନ୍ଦ୍ର ବେଶେ ଦ୍ୱାରେ ହେଲ ଭିଖାରୀ । —ତପସ୍ୱିନୀ ।

## ମେଳି

ଆଦିବାସୀମାନେ ପ୍ରଥମେ ରାଜାଙ୍କୁ ଅସହଯୋଗ କଲେ । ରାଜା ଏହାକୁ ହେୟଜ୍ଞାନ କଲେ । ଏହି ଅଶାନ୍ତି, ବିସ୍ତାରଲାଭ କଲା ଓ ମେଳିଜା-ଗୃହକୁ ବ୍ୟାପିଗଲା । ଶେଷରେ ବିଦ୍ରୋହର ସୂତ୍ରପାତ ହେଲା । ଗାଁ ଗାଁରେ ସଙ୍ଘସମିତିମାନ ହେଲା । ବାଦାମ ପଡ଼ିଆ ଓ ଲୁଣ୍ଠାପୋଡ଼ା ଛକ ସଙ୍ଗଠନାର୍ଥ ପାଇଁ ସ୍ଥାନ ଠିକ୍ ହେଲା । କେତେକ ଦାବୀ ସାକାରରୂପ ନେଲା ।

୧ । ମାଡ଼ିଆବନ୍ଧ ପଡ଼ିବ । ହଳଦିଆକୁ ଜଳସେଚିତ ଅଞ୍ଚଳ କରାଯିବ ।

୨ । ଡାକଘରଟିଏ ଯୋଗାଯୋଗର ଉନ୍ନତି ପାଇଁ ହେବ ।

୩ । ମି: ଇ: ସ୍କୁଲ୍ ସ୍ଥାପନ କରାଯିବ । ଶିକ୍ଷା ବିସ୍ତାର ହେବ ।

୪ । ବେଠି ବେଗାରୀ ଉଚ୍ଛେଦ ହେବ । ବିନା ପାରିଶ୍ରମିକରେ ଆଦିବାସୀମାନେ ଜମିଦାରଙ୍କ କାମ କରିବେ ନାହିଁ ।

୫ । ଜମି ଦାଖଲ ଖାରଜ ହେବ । ରେକର୍ଡ଼ପତ୍ର ସମୟୋପଯୋଗୀ
ହେବ ।

୬ । ଅନାବାଦୀ ଜମି ପଟ୍ଟା ଦିଆଯିବ ।

୭ । ଜଙ୍ଗଲରେ ପ୍ରଜାଏ ଲଗାଇଥିବା ଆମ୍ବଫଳ ଭୋଗୀସତ୍ତ୍ୱ ଦିଆଯିବ ।

୮ । ନଈ ପୋଖରୀର ମାଛ ପ୍ରଜାଏ ବାଣ୍ଟି ନେବେ ।

୯ । ବର୍ଷ ମଧ୍ୟରେ ଜଙ୍ଗଲରୁ ଜାଳେଣି କାଠ ପ୍ରଜାଙ୍କ ବ୍ୟବହାର ପାଇଁ
ଛାଡ଼ ହେବ ।

ଗଡ଼ ବ୍ରାହ୍ମଣବେରଣୀ, ବସନ୍ତ ଓ ହାଟସାହି ମେଳରେ ଅଟଳ ରହିଲେ । କୁଆପୁଟର ସ୍ଥିତି ଦୋଳାୟମାନ ଥିଲା । ବ୍ରାହ୍ମଣମାନେ ରାଜାଙ୍କ ସହିତ ଘନିଷ୍ଠ ଭାବେ ଜଡ଼ିତ ଥିଲେ । ଶେଷରେ ବାଧ୍ୟ ହୋଇ ପ୍ରଜାଙ୍କ ସହ ଯୋଗ ଦେଲେ ।

ପ୍ରଜାମାନେ ରାଜାଙ୍କୁ ବାସନ୍ଦ କଲେ । ପୁରୋଧା, ଧୋବା, ବାରିକ ଓ ବେହେରା ଖଟଣି ବନ୍ଦ ହେଲା । କୃଷି କାର୍ଯ୍ୟରେ ଅସହଯୋଗ ହେଲା । ରାଜା ବାହାର ମୌଜାର ଲୋକଙ୍କୁ ଆଣି ହଳକାମ କରାଇଲେ ।

## ଆନ୍ଦୋଳନର ବ୍ୟାପକତା

ରାଜା ନଅରରୁ ପ୍ରଜାଙ୍କ ନାମରେ ମୋକଦ୍ଦମାମାନ ରୁଜୁ କଲେ । କୁଆପୁଟର ଜନସେବକ କମ୍ପାଉଣ୍ଡରର କାର୍ଯ୍ୟ କରୁଥିଲେ ମଧ୍ୟ ଜନମୁଖରେ ଡାକ୍ତର ସମ୍ବୋଧିତ ଶ୍ରୀ ବେଣୁଧର ମହାନ୍ତ ଜଣେ ଶିକ୍ଷକ ତଥା ନେତା ଥିଲେ । ଦଣ୍ଡେଇ ଶହର ସାହିର ଶ୍ରୀ ମଙ୍ଗୁଳୀ ସ୍ୱାଇଁ ବାଉରୀଙ୍କ କାଳେସୀ ଥିଲେ । ରାଜା ଏ ଦୁଇ ନେତାଙ୍କୁ ଜବତ୍ କରିବାକୁ ଏକ ମିଥ୍ୟା ମୋକଦ୍ଦମାର ଆଶ୍ରୟ ନେଲେ । ରାଜାପକ୍ଷ ଲୋକ କୁଆପୁଟର ଶ୍ରୀ ଗଙ୍ଗାଧର ସାହୁଙ୍କ ବଳଦର ଲାଞ୍ଜ ଏ ଦୁହେଁ ହାଣିଛନ୍ତି ବୋଲି ମୋକଦ୍ଦମା କଲେ । ମୋକଦ୍ଦମା ଚାଲିଲା । ଆସାମୀ ଦୁହେଁ ଧର୍ମପରାୟଣ ଥିବାରୁ ଧର୍ମର ଜୟ ହେଲା । ଦୁହେଁ ନିର୍ଦ୍ଦୋଷରେ ଖଲାସ ହେଲେ ।

ବ୍ରାହ୍ମଣବେରଣୀର ଶ୍ରୀ ଜଗନ୍ନାଥ ଲେଙ୍କା ବସ୍ତୁ ମନ୍ଦିର ନିର୍ମାଣ ପାଇଁ ମୁଣ୍ଡିଆରୁ ପାଟପଥର କଟାଇବା ବେଳେ ମୋକଦ୍ଦମା ହେଲା ।

ପଥର ଜବତ ହେଲା । ଅବଶ୍ୟ ଶ୍ରୀ ଲେଙ୍କା ଜିତିଲେ ଓ ପଥର ନେଇ ପାରିଲେ ।

ସଂରକ୍ଷିତ ଜଙ୍ଗଲରୁ କଙ୍ଗଡ଼ା କାଠ କାଟି ନେଇଥିବା ଅଭିଯୋଗରେ ଶ୍ରୀ ନରସିଂହ ଭଞ୍ଜଙ୍କ ନାମରେ ମୋକଦ୍ଦମା ହେଲା । ରାଜା ସ୍କୁଲକୁ ସୁବିଧା ନ ଦେବାକୁ ବାଦାମ ପଡ଼ିଆରେ ଦ୍ୱିଶ୍ରସ୍ତ ଦୋଳମଣ୍ଡପ କଲେ । ସମସ୍ତଙ୍କର ଚକ୍ଷୁଶୂଳ ହେଲେ ।

ଏ ସବୁରେ ପ୍ରଜାମେଳର କେନ୍ଦ୍ର କମିଟି ଅତିଷ୍ଠ ହେଲେ । ରାଜାଙ୍କ ନାମରେ କବିମାନେ କଲମ ଚଳାଇଲେ ।

୧ । ରାଜ୍ୟ ଲୋକେ ହୋଇଲେ ଅନ୍ଧ
ନ ପଡ଼ିଲା ମାଡ଼ୁଆ ବନ୍ଧ ।

× × ×

୨ । — — ଙ୍କୁ ଧରି
କାନ୍ଦ କାନ୍ଦ ରଘୁ କରେ ଗୁହାରି ରେ
ଭଞ୍ଜ ଟୋକା ମୋ ହେଲେ ଭଗାରି ମୋ ଧନ ରେ ।
ଘନଆଁ ତୋଟା ସଡ଼କେ,
ଗାଡ଼ି ମୁଁ ଚଡ଼ିଲି କେତେ ଫଡ଼କେ ରେ ।

× × ×

୩ । ବାଜୁଛି ଘନ ଘୋର, ବଜ୍ର ବାଦଲ ଷ୍ଟେଟ ରେ । (ଘୋଷା)
ପୁଟ ଦଆ ଗୁଳି ଯାଉଛି ନକଳି ଏପଟ ସେପଟ ଫିଟିଛି ବାଟ
ଆରେ ଲମ୍ପଟ
କୁଜାତି ଧୂର୍ତ୍ତ
ମଲ୍ଲିକାଶ୍ରୀ ପୋଡ଼ାମୁହାଁ ନଲଠରେ ॥ ୧ ॥

× × ×

୪ । ଧାଇଁ ଆସ ହୋ
ଏବେ ଦେଖିବ ପାଲା

ରଘୁନାଥ ଦେବ ମୂକ ହୋଇଗଲେ
ମାଳାଚନେ ପଡ଼ୁଅଛି ଚନ୍ଦନ ।

୫ । ବ୍ରାହ୍ମଣ ପୁରୋଧାମାନଙ୍କୁ ଲକ୍ଷ୍ୟ କରି—
କି କରିବା ଏ ମନେ !
କହ ଭାଇନା ମୋତେ ରେ । ୦ ।

ଚିର ଦାନା ପାଣି ବ୍ରାହ୍ମଣଦେବରଣୀ
ଆଜ କି ମିଳିବ ଏ ପରଗନ୍ତରେ
(ଆରେ) ଲଙ୍ଗା ହୁଡ଼ୁମ୍ବ ନାଚୁଅଛି ନେଶେରେ ।

ସର୍ବଶେଷରେ ରାଜା ଏକ ଶଗଡ଼ରେ ବସି ଖୋର୍ଦ୍ଧା ଯିବାବେଳେ ତାଙ୍ଗି ଥାନାରେ ମେଳି ନେତାଙ୍କ ସମ୍ମୁଖୀନ ହେଲେ । ତା ୨ । ୩ । ୧୯୪୪ରେ ରାଜାଙ୍କୁ ଅପମାନିତ କରାଗଲା । ରାଜା ଟ ୫୦୦୦ଙ୍କା ଲୁଣ୍ଠ ଓ ମାନହାନି ମୋକଦ୍ଦମା କଲେ । ପ୍ରତିଶୋଧ ନେବାକୁ ପଣ-କରି ହଳଦିଆ ଗୁଣ୍ଡ ଖୋର୍ଧାରେ ରଖିଲେ । ଡକାୟତି କେସରୁ ମୁକ୍ତି ମିଳିଲା । ମାତ୍ର ମାନହାନି କେସରେ ଶ୍ରୀ ଗଙ୍ଗାଧର ଭଞ୍ଜ, ଶ୍ରୀ କଣ୍ଠକୃଷ୍ଣ ଭଞ୍ଜ ଓ ଶ୍ରୀ ମଦନ ମୋହନ ଭଞ୍ଜ (ଦାସ) କାରାଦଣ୍ଡ ଭୋଗକଲେ । ରାଜବନ୍ଦୀ ହୋଇଥିବାରୁ ଅଗଷ୍ଟ ୧୫, ୧୯୪୭ ଉତ୍ସବ ଦିନ ଦଣ୍ଡ ସମ୍ପୂର୍ଣ୍ଣ ହେବା ପୂର୍ବରୁ ତିନିଜଣଯାକ ଖଲାସ ହେଲେ ।

## ବାସି ହଳଦୀ

୧ । ଭାରତରେ ରାଜତନ୍ତ୍ରର ବିଲୋପ ଓ ପ୍ରଜାଶକ୍ତିର ଉଦ୍ରେକ ମେଳି-ପାଇଁ ଆହ୍ୱାନ ଦେଇଥିଲା ।

୨ । ଧନ ସଂଗ୍ରହ ବେଳେ କଟୁଣା କଠୋର ହେବାକୁ ପଡ଼େ । ପୀତ-ବାସଙ୍କ ଅମଳରେ ଏହି ଅଶାନ୍ତି ଥିଲା । ଜ୍ୟେଷ୍ଠ ସନ୍ତାନ ସେସବୁ ଭୋଗ କଲେ । ପୀତବାସଙ୍କ ମୃତ୍ୟୁର ଅବ୍ୟବହିତ ପରେ ମେଳି ହେଲା ।

୩ । ମେଳିଟି ଭାସ୍ୱାଙ୍କ ବ୍ୟକ୍ତିଗତ କଳହରୁ ସୃଷ୍ଟି ହେଲା ।

୪ । ମାଡ଼ୁଆ ବନ୍ଧ ନଷ୍ଟକଲି ଜଙ୍ଗାର । ବନ୍ଧୁଦାର ନଷ୍ଟକ ଓ ପୁସ୍ତ କଲେକ୍ଟର ହଳନ୍ଦଆବାସୀ ପକାଇଥିବା କନ୍ଦ୍ର କାଟିଛନ୍ତି । ଅସ୍ଥାୟୀ ସ୍ଥଳେ ଉଦ୍‌ବୃତ୍ତ ଜଳ ଏବେ ଆସୁଛି ।

୫ । ଡାକଘର କେନ୍ଦ୍ର ସରକାର ୧୯୪୭ରୁ ଖୋଲଦେଲେ । ଏବେ ବସେଇ ଠାଙ୍ଗୀରେ ଡାକଘର ହେଲା । ବସନ୍ତ ସେଥିରେ ସାମିଲ ହେଲା ।

୬ । ୧୯୪୭ରୁ ମି: ଇ: ସ୍କୁଲ୍ ସ୍ଥାପିତ ହେଲା ।

୭ । ଜମିଦାରୀ ୧୯୫୩ରେ ଲୋପ ପାଇଲା । ଯେତେ ଲୋପ ହେଲା, ସେମାନଙ୍କ ଏହାର ଉଲ୍ଲୋପ ସାଧନ ହୋଇଥିଲା ।

୮ । ଯଜମାନ କୂଳ ପୁରୋଧା ହରାଇଲେ ।

୯ । ଗଛ ଫଳଭୋଗୀ ଅଦ୍ୟାବଧି ହୋଇପାରିଲା ନାହିଁ ।

୧୦ । ମୌଜାର ପୋଖରୀ ମାଛ ଏବେ ପଞ୍ଚାୟତ ନିଲାମ କରୁଛନ୍ତି ।

୧୧ । ଦଶହରା ପର୍ବର ଖଣ୍ଡାଭୋଗ ମୌଜାମାନଙ୍କର ପରିବାରକୁ ଦିଆ-ଯାଉଥିଲା । ତାହା ବନ୍ଦ ହେଲା ।

୧୨ । ରାଜା ସମ୍ମାନ ହରାଇଲେ । ସ୍ୱପ୍ନାଳୀ ୩ ଜଣ ଜେଲ୍ ଭୋଗିଲେ । ତେବେ ମେଳ ସମସ୍ତଙ୍କର ଆଖି ଫିଟାଇଲା ।

---

## VILLAEG NOTE

## HALDIA

I. ହଲଦିଆ ବନ୍ଦୋବସ୍ତ ୧୮୭୯

II. Physical description (Route, soil, position, Production and changes in fertility, e. g. sand deposit, salt, saltwater infeudation etc)

ଏହି କଲ୍ଲା ଅନ୍ତର୍ଗତ ପାଞ୍ଚମଉଜା ଚତୁଃପାର୍ଶ୍ୱରେ ଉ: ଡମପଡ଼ା । ଦ: ଖାସମାହାଲ । ଜ। ଦାଣ୍ଡିମାଳ, ମୌ: ବଦେଇଟାଙ୍ଗି ଓ ମୌ: ତୁଳସୀପୁର ଅଟେ । ଉକ୍ତ କଲ୍ଲା ମଧ୍ୟରେ କୁଆପୁଟ, ନଜଗଡ଼— ହଳଦିଆ, ମୌ ବସନ୍ତ, ମୌ ବ୍ରାହ୍ମଣବେରଣି ଓ ହାଟସାହି ଏପରି ପାଞ୍ଚ ମୌଜା ମଧ୍ୟରେ ମୌ କୁଆପୁଟ ବୃହତ୍ ମୌଜା ଅଟେ । ଏ ମୌଜାମାନଙ୍କରେ ଗୋଡ଼ିଆଳ, ମଟାଳ, ଖଳିଆମଟାଳ, ବାଲିଆ ମଟାଳ ଓ ଶିଳା ମଟାଳର ଜମି ଅଛି । ଉତ୍ତର ପଶ୍ଚିମ ତରଫରେ ବାଙ୍କି ସରହଦକୁ ଲଗି ରଣନଈ ନାମକ ଏକ ଗୋଟି ଅଳ୍ପ ପ୍ରସାରର ନଈ ଅଛି । ଏ ନଈର ଜଳ ବୃଦ୍ଧି ହେତୁ ବସନ୍ତ ଓ କୁଆପୁଟର କେତେକ ଅଂଶ ଜମି ଧୋଇହୋଇଯାଏ ।

ଏ ମଉଜାମାନଙ୍କ ମଧ୍ୟରେ ମଉଜା କୁଆପୁଟ ଜମିର ଉର୍ବରା ଶକ୍ତି ପ୍ରାୟ ଉତ୍କୃଷ୍ଟ ଅଟେ ।

III. Irrigation and Embankments:

ଏ କଲ୍ଲା ମଧ୍ୟରେ ସରକାରୀ କେନାଲ୍ କିମ୍ବା ବନ୍ଧ ନାହିଁ । ଖୋରଧାଠାରୁ ହଳଦିଆଗଡ଼ ପର୍ଯ୍ୟନ୍ତ ଲୋକାଲବୋର୍ଡ଼ ସଡ଼କ ଏକ ଗୋଟି ଅଛି । ଫସଲ ରକ୍ଷାନିମନ୍ତେ ସରକାରୀ ବନ୍ଧ ନ ଥିଲେ ହେଁ ଛୋଟ ଛୋଟ କେତେକ ବନ୍ଧ ଅଛି । ତାହା ପ୍ରଜାମାନଙ୍କ ଦ୍ୱାରା ମରମତ ହୋଏ ଓ ଜଳର ସୁବିଧା ସକାଶେ ଝିଲମାନ ଅଛି । ଏହି ଜଳ ଦ୍ୱାରା ଅନେକ ଜମି ଫସଲ ରକ୍ଷା ହୋଏ ।

IV. General crops and agricultural notes (e.g as to harvest, rotation of crops, unusual failure of crops etc.)

ଏ ଜଲ୍ଲା ମଧ୍ୟରେ ଶାରଦ ଫସଲ ଓ ବର ମୁଗ ଓ ମାଣ୍ଡିଆ ଓଗେର ଫସଲମାନ ହୋଏ । ଶାରଦ ମଧ୍ୟରେ କାଳଅାଁସୁ ଓ ଜରଦା । ଏହା ଶରଦ, ଆସିନ୍ୟ ମାସରେ କଟାଯାଏ । ବଡ଼ ଧାନ ମଧ୍ୟରେ ଚମ୍ପେଇଣିଥାଳି ଓ କଣ୍ଟା । ଏହା ମାଘ, ଫାଲ୍‌ଗୁନ୍ୟ ମାସରେ କଟାଯାଏ । କନ୍ତୁ କନ୍ୟାଧାନ ସହଜରେ ଧୋଇ ଯୋଗେ ନୁକସାନ ହୋଇପାରେ ନାହିଁ । ଜଲ୍ଲାର ପଶ୍ଚିମ ତରଫ ରଣନଦୀ ନିକଟବର୍ତ୍ତି ବର ଫସଲ । ଏହା ଧୋଇଥା ଜମିରେ ବିଶେଷ ହୋଏ । ମୁଗ, କୋଳଥ ଓ ମାଣ୍ଡିଆ ଫସଲ ଉଚ୍ଚଜମି ଅର୍ଥାତ୍ ଟାଙ୍ଗି ପ୍ରାୟ ଭୂମିରେ ହୋଏ । ଏଥି ମଧ୍ୟରେ ସାରଧ ଫସଲ ଓ ବାଯେ ଫସଲ ମଧ୍ୟରେ ବର ଅଧିକାଂଶ ହୁଏ ।

V. Village history (with special reference to history of proprietores & tenure holders, partitions and sub-infeudation change in the nature of land)

ପ୍ରଥମତଃ ଜଲ୍ଲା ମୟୂରଭଞ୍ଜରୁ ଭଞ୍ଜବଂଶୀୟ ଅଣି ଭଞ୍ଜ ଓ ଛଣି ଭଞ୍ଜ ନାମରେ ଦୁଇଜଣ ଆସି ପୁରୀରେ ପ୍ରବେଶ ହୋଇ ଠାକୁର ମହାରାଜାଙ୍କର ଏକଗୋଟି ଝିଅଙ୍କୁ ଜଣେ ତହିଁ ମଧ୍ୟରୁ ବାହା ହେଲେ । ସେ ସମୟରେ ଏ ଜଲ୍ଲା ସହିତ ସୁଦ୍ଧ ଖୋରଧା ଜଲ୍ଲା ଉକ୍ତ ରାଜାଙ୍କର ରାଜ୍ୟ ଥିବାରୁ ଏ ଜଲ୍ଲାକୁ ତେଲ ହଳଦୀ ସକାଶ ଯୌତୁକ ନେଇ କା ୨୫୫ ହାଣ କରିଡ଼ ରାଜସ୍ୱ ସ୍ୱରୂପ ଦେଇ ଏ ଜଲ୍ଲାରେ ଅଧିକାର କଲେ ।

ଉକ୍ତ ଦୁଇଜଣ ଭଞ୍ଜଙ୍କ ମଧ୍ୟରୁ ରାଜକନ୍ୟା ବିବାହିତ ଭଞ୍ଜ ରାଜା ଓ ଅପର ବ୍ୟକ୍ତି ରାୟା ନାମରେ ଖ୍ୟାତ ହେଲେ । ରାଜାଙ୍କର ଏହିପରି ପ୍ରଚଳିତ ହେଲା । ରାଜାଙ୍କର ଏକରୁ ଅଧିକ ପୁତ୍ର ହେଲେ ପ୍ରଥମପୁତ୍ର ରାଜା ଓ ଅବଶିଷ୍ଟ ପୁତ୍ରମାନେ ରାୟା ମଧ୍ୟରେ ଗଣମାୟ ହୋଇ ଭରଣପୋଷଣ ନିମନ୍ତେ ରାଜାଙ୍କ ମାହାଲ ମଧ୍ୟରୁ କେତେକ ଜମି ନେଇ ଏ ଜଲ୍ଲରେ

ଚଳମାସୁ ପଦ୍ଧତି ଅନୁସାରେ ବା ୧୫ ଦୁଇଟଙ୍କା ପାଞ୍ଚଅଣା ୪ ପାହ୍ଣ ହିସାବ ଟଙ୍କା ରାଜାଙ୍କୁ ଦେଇ ଉକ୍ତ ଜମିରେ ଭୋଗ ଦଖଲ କରନ୍ତି ଓ ଗନ୍ତୁ-ମାନଙ୍କ ମଧ୍ୟରୁ କେହି ନିସନ୍ତାନ ହେଲେ ଉକ୍ତ ନିସନ୍ତାନ ସମ୍ପତ୍ତିକୁ ରାଜା ନିଜେ ନିଅନ୍ତି ଓ ଗନ୍ତୁମାନେ ସନ୍ତାନ ନ ହେବା କାରଣରେ ପୋଷ୍ୟ-ପୁତ୍ର କରି ନ ପାରିବାର ପ୍ରଥା ପୂର୍ବରୁ ପ୍ରଚଳିତ ଅଛି । ସରକାର ବାହାଦୁର ଖୋରଧା କିଲ୍ଲାକୁ ନେବା ସମୟେ ଏ କିଲ୍ଲାକୁ ଅଧିକାର କରିବା କାରଣ ଆକ୍ଷେପ କରିବାରୁ ସେ ସମୟେ କିଲ୍ଲାରେ ଥିବା ରାଜା ଙ୍କ ୨୫୫ ଖାଣ ଜଉକ୍ଷ ଦେଇ ଏ କିଲ୍ଲାକୁ ପୁରୀ ମହାରାଜାଙ୍କ ଅଧୀନରେ ଦଖଲ କରୁଥିବାର ସନନ୍ଦ ସରକାର ବାହାଦୁରଙ୍କୁ ଦରଶାଇବାରୁ ସରକାର ବାହାଦୁର କିଲ୍ଲା ମହକୁମାରେ ଜମା ବୃଦ୍ଧି ନ କରି ସାଦକ ଙ୍କ ୨୫୫ ଖାଣ ଜଉକ୍ଷକୁ କୁମ୍ପାନି କବୋଟ ମତେ ଟ ୨୩୯ ଙ୍କା ପେସ୍‌କସ ଧାର୍ଯ୍ୟ କରିଦେବାରୁ ସେହି ତାରିକରୁ ଆଜଅବଧି ପୂର୍ବରାଜାଙ୍କର ଉତ୍ତରାଧିକାରୀ କ୍ରମେ (ଖଣ୍ଡାଏତ) ଏହି ପଦ ପ୍ରାପ୍ତ ହୋଇ ଦଖଲ କରି ଆସୁ ଅଛନ୍ତି । ଗନ୍ତୁମାନଙ୍କର ଘରବାରି ଜମିମାନ ମିନ୍ହା ଓ ଗନ୍ତୁ-ମାନଙ୍କ ଅଧୀନରେ ଥିବା ରଇତଙ୍କ ଘରଡ଼ିହ ଖଜଣା ଫି ବ ୧ ଖରକୁ ବ୧ ଙ୍କୁ ନଅଅଣା ଅଟେ । ଏହିମଧ୍ୟରୁ ଖଣ୍ଡାଏତଙ୍କର ଛଅଅଣା ୭ ପାହ୍ଣ ଓ ବାକି ଗନ୍ତୁମାନେ ଦୁଇଅଣା ୭ ପାହ୍ଣ ନିଅନ୍ତି ଓ ମଜ୍ଜୁଦଆଙ୍କ ଜମା ଯାହାକି ଗନ୍ତୁମାନଙ୍କ ଟଙ୍କୀ ଜମି ମଧ୍ୟରେ ଅଛି, ତହିଁରୁ ପ୍ରତି ଟଙ୍କାକରେ ବାରଅଣା ଖଣ୍ଡାଏତଙ୍କର ଯାଇ ବାକି ଚାରିଅଣା ଭାଇଆମାନେ ନିଅନ୍ତି । ଖଣ୍ଡାଏତଙ୍କ ମାହାଲକୁ କୋଠବାଡ଼ ଓ ଗନ୍ତୁମାନଙ୍କ ହିଂସାକୁ ଭାଇବାଡ଼ କହନ୍ତି ।

VI. Rents and Government revenues (note, rates and history of any general enhancement of rents and state have the rates compare with rates in the neighbourhood. Explain produce rents if taken)

ଏ କିଲ୍ଲାରେ ନିମ୍ନଲିଖିତ ଦରବନ୍ଦର ଜମି ଅଛି ।

| ସାରଦ | ଘରଡ଼ିହର ଦର |
|---|---|
| ଙ୍କ ୧ ବାରଅଣା ୭ ପାହ୍ଣ | ଘର ୧ ବଖରକୁ ନଅ ଅଣା |

ଙ୍କା ୨ ଦଶଅଣା ୮ ପାଇ

ଙ୍କା ୩ ଛଅଅଣା ୫ ପାଇ

କୌଣସି ପ୍ରଜା ଘର ସାମିଲରେ ଯେତେ ବାଡ଼ି ଦଖଲ କରୁଥାଏ ତାହାର ଖଜଣା ପୃଥକ ନିର୍ଦ୍ଦିଷ୍ଟ ନ ଥାଇ କେବଳ ଯେତେ ବଖରା ଘର ତାହାର ଥାଏ ତେତିକ ବଖରାର ଖଜଣା ଫି ବଖରାକୁ ନଅଅଣା ହଏ । କିନ୍ତୁ ଯେତେ ବାଡ଼ି ଦଖଲ କରୁଥିଲେ ହେଁ ତାହାର ଖଜଣା ପୃଥକ ହଏ ନାହିଁ ।

VII. Kistis for payment of rents.

ଏ କିଲ୍ଲାରେ ପୂର୍ବରୁ ଖଜଣା ଅସୁଲ ହବା କାରଣ କିସ୍ତି ନିରୂପଣ ନାହିଁ । ଖଣ୍ଡାଏତଙ୍କର ଟଙ୍କା ଆବଶ୍ୟକ ସମୟରେ ଖଜଣା ଅସୁଲ ହୋଏ ।

VIII. Cesses and abmals if any.

ପଥକର ରଏତି ଜମିରେ ଫି ଟଙ୍କାକୁ ୬ ପାଇ ଓ ମିହ୍ନ୍ୟା ଜମିରେ ଫି ମା ୧ କୁ ଏକ ଅଣା ଓ ଲ । ବାହେଲେ ଜମିମାନଙ୍କରେ ସରକାର ବାହାଦୂରଙ୍କଦ୍ୱାରା ନିରୂପିତ ହୋଇଥିବା ପଥକର ଅସୁଲ ହୋଏ ।

IX. Ri:hts of tenants (i. e whether occupancy right are transferable by custom without consent of land lord. To what extent transfers made. By what classes tenats rights are purchased. Whether Raiyats can acquire occupancy rights by custom.)

ଏ କିଲ୍ଲା ମଧ୍ୟରେ ନିମ୍ନଲିଖିତ ସତ୍ତ୍ୱ ଅଛି ।

୧ । ଲଖରାଜ ବାହେଲ ୨ । ଘଣ୍ଟେଘର ମିହ୍ନ୍ୟା ୩ । ଘରଘର ଟଙ୍କୀ ୪ । ସ୍ଥିତିବାନ୍ ରଏତ ୫ । ଦଖଲ ସତ୍ତ୍ୱ ଶୂନ୍ୟରଏତ ୬ । ଚନ୍ଦନା ରଏତ । ଏହା ଭିନ୍ନ ବାଜଦଆକ ଯାଗିର ମିହ୍ନ୍ୟା ।

ଏ କିଲ୍ଲାରେ ସମସ୍ତ ଦରୁମାନ ଖଣ୍ଡାଏତଙ୍କ ଅଧୀନ ଅଟେ । କୌଣସି ସତ୍ତ୍ୱଦାର ଆପଣାର ସତ୍ତ୍ୱକୁ ବିକ୍ରି କରିପାରିବାର କ୍ଷମତା ନାହିଁ ।

X. Markets and Communications.

ଏ ଜଲ୍ଲା ମଧ୍ୟରେ ହାଟ କମ୍ବା ବଜାର ନାହିଁ । ଗ୍ରାମବାସୀମାନେ ନ—ବାଙ୍କି ଚର୍ଚ୍ଚିକା ହାଟ ଓ ଭୁଲସୀପୁର ହାଟ ଖାସମାହାଲ ନ— ଖୋରଧା ପଲହାଟରୁ ମଓଦା କଣି ଆଣନ୍ତି । କେବଳ ପଲ ହାଟକୁ ଯିବା ନମନ୍ତେ ସଡ଼କରାସ୍ତା ଅବଶିଷ୍ଟ ଦୁଇ ହାଟକୁ ଯିବା ନମନ୍ତେ ସଡ଼କ ରାସ୍ତା ନ ଥିବାରୁ ମଫସ୍ବଲ ବାଟରେ ଯିବାକୁ ହୋଏ । ଜଲ୍ଲା ଅନ୍ତର୍ଗତ କୁଆପୁଟ ମୌଜାରେ କେନ ସାମାନ୍ୟ ଦୋକାନ ଅଛୁ ।

XII. Sairat (e-g fisheries)

ଏ ଜଲ୍ଲାରେ ମଛଦଆ କୋଠବାଡ଼ ବାବଦ ଯମା ଟ ୩୪ ଙ୍କା ଯମା ଅଛୁ ।

XII. Trees—(Customes as to)

ଏ ଜଲ୍ଲାରେ ଆମ୍ବ, ପଣସ, ଡୁନ୍ତୁଳ, ବାଉଁଶ, ବର ଓଗେର ଗଛମାନ ଅଛୁ । ବଶେଷରେ ଏ ଜଲ୍ଲାରେ ଅନେକ ଆମ୍ବ ଗଛ ଅଛୁ । ତହିଁ ମଧ୍ୟରେ ଗୁଣଗମ୍ଭୀର, ଗୁଣସାଗର, କ୍ଷେମା ଦାସିଆ ଓ ସଦାବର୍ତ୍ତି, ଶିନ୍ଦୁପୁଅ, ବଡାଣ ଗଳୀଆ ନାମକ ବୃକ୍ଷର ଆମ୍ବ ସର୍ବୋତ୍କୃଷ୍ଟ ଅଟେ ।

XIII. Village officials and service tenure holders—
(State how village officials are paid)

ଏ ଜଲ୍ଲାରେ ଖଣ୍ଡାଏତ ଅଧୀନରେ ନମ୍ନଲଖିତ ରକମର ଯାଗୀଦାର ଅଛନ୍ତି ।

**ଆପଟ ଯାଗିର**—ଗଉଡ଼ମାନେ ବେଠି କାର୍ଯ୍ୟ କରିବା ଅର୍ଥାତ୍ ଖଣ୍ଡାଏତଙ୍କୁ ସଓ୍ବାରରେ ନେବା ଓ ଦୁଧ ଘିଅ ଦେବା ନମନ୍ତେ ପାଉ ଅଛନ୍ତି ।

**ପାଖଲୋକ ଯାଗିର**—ଗଉଡ଼ ଅଥବା ଭଣ୍ଡାରୀ, ଖଣ୍ଡାଏତଙ୍କ ନକଟରେ ସର୍ବଦା ହାଜର ଥାଆନ୍ତି ।

**ପାଣିକଳାନ ଯାଗିର**—ଦାକୁଅ ଜମିକୁ ପାଣି ମଡ଼ାଇବା କାରଣ ଯାଗୀ ପାଇ ଅଛନ୍ତି ।

**ପାଞ୍ଜିଆ—ପାଞ୍ଜିଆ ଯାଗିର**—ସରବରାକାରମାନଙ୍କଠାରୁ କାଗଜପତ୍ର ବୁଝି ନେବା କାରଣ ଯାଗୀ ଭୋଗ କରନ୍ତି ।

**ଚନ୍ଦ୍ରକାର ଯାଗିର**—ଖଣ୍ଡାଏତ ଉଆସରେ ମଣ୍ଡନ କରେ ।

**ବାଜାଦାର ଯାଗିର**—ଉପର ଲିଖିତ ଯାଗୀଦାରମାନଙ୍କୁ ମୁକରର ଓ ବରଖାସ୍ତ କରି ପରିବର୍ତ୍ତନ କରିବାର କ୍ଷମତା ଖଣ୍ଡାଏତଙ୍କ ଅଛି । ଚଉକିଆ ଫି ସ୍ ଘ ୧ ରକୁ ବାର୍ଷିକ ଦୁଇଅଣା ହିସାବ ମିଏ । ତାହା ବାଦ ଯାଗୀ ଜମି ଭୋଗକରେ ଓ ଖଣ୍ଡାଏତଙ୍କଠାରୁ ହଳାବଡ଼ା ନିଏ ନାହିଁ । ଧୋବା, ଭଣ୍ଡାରି ଏମାନେ ଫି ଜ ୧ ଣକୁ ବାର୍ଷିକ ଦୁଇଅଣା ନିଅନ୍ତି ।

ବଢ଼େଇ, କମାର ବ ୧ ର୍ଷକୁ ଏକଗୋଟି ହଳରେ କଟକୀ ୬ସେର ନଜରରେ ଗୌ ୨ ଣି ଅନାଜ ଏକବଡ଼ା କଲେଇ ନିଅନ୍ତି ।

## XIV. Village Measures & Weights

ଏ କିଲ୍ଲା ସାବକ ୯୦ ସାଲ ବନ୍ଦୋବସ୍ତରେ ଫୁ ୭ ଟ ଅର୍ଥାତ୍ ଦ ୧୪ ସ୍ତି ପଦକାରେ ମାପ ହୋଇଥିଲା । ବର୍ତ୍ତମାନ ଦେଶୀପ୍ସ ପ୍ରଥା ଅନୁସାରେ ସେହିପରି ପ୍ରଚଳିତ ଅଛି । ନିମ୍ନଲିଖିତ ମେଜରମାନ ବ୍ୟବହୃତ ହୁଏ । ଟ ୧୦୫ଙ୍କା ଓଜନରେ କଟକୀ ସେ ୧ ର, ୬ ସେରରେ ୧ ଗୌଣି ଗୌ ୮୦ ଣିରେ ଏକ ଭରଣ । ଟ ୪ ଙ୍କାରେ ଏକ ପଲ ୨୦ ପଲରେ ୧ ବିସା ।

## XV. General notes (e. g)

(Population, caste, occupation, village customs not mentioned above fuel, & fodder resources & sanitary arrangements any special facts about public health.)

ଏ କିଲ୍ଲାରେ ନିମ୍ନଲିଖିତ ଜାତିପ୍ସ ଲୋକମାନେ ବାସ କରନ୍ତି ।

(୧) ବ୍ରାହ୍ମଣ, (୨) କରଣ, (୩) କ୍ଷେତ୍ରୀପ୍ସ, (୪) ଖଣ୍ଡାଏତ, (୫) ପାଏକ, (୬) ଗୁଡ଼ିଆ, (୭) ଗଉଡ଼, (୮) କଂସାରି, (୯) ତାମ୍ବୁଲି,

(୧୦) ତେଲି, (୧୧) କେଉଟ, (୧୨) କମାର, (୧୩) କୁମ୍ଭାର, (୧୪) ବଢ଼ାଇ, (୧୫) ଭଣ୍ଡାରୀ, (୧୬) ଧୋବା, (୧୭) ତନ୍ତ, (୧୮) ଶଙ୍ଖକାର, (୧୯) ଗୋଖା, (୨୦) କଣ୍ଡରା, (୨୧) ସହର, (୨୨) ବାଉରି, (୨୩) ପାଣ, (୨୪) ମେହେନ୍ତର, (୨୫) ଗୁପ୍ତବେଶ୍ୟା, (୨୬) ଗୁଡ଼ସେଠୀ (ରୁପଜୀବୀ) ।

ଉଲ୍ଲିଖିତ ଲୋକମାନେ କୃଷି ଓ ସ୍ୱଜାତିକାଦ୍ୱାରା ଜୀବନଯାତ୍ରା ନିର୍ବାହ କରନ୍ତି । ଏ ଜିଲ୍ଲାରେ ଡାକ୍ତର ନାହାନ୍ତି । ନଜଗଡ଼ ହଳଦିଆ ମୌଜାରେ ଖଗେ ଭଞ୍ଜ ନାମରେ ଏକଜଣ ଦେଶୀୟ ବୈଦ୍ୟ ଅଛନ୍ତି । ତାହାଦ୍ୱାରା ଏ ଜିଲ୍ଲାର ଲୋକମାନେ ଚିକିତ୍ସିତ ହୁଅନ୍ତି ।

ନିମ୍ନଲିଖିତ ରୋଗରେ ଲୋକମାନେ ପୀଡ଼ିତ ହୁଅନ୍ତି ।

ସାମାନ୍ୟ ଅର୍ଥାତ୍ ସାଧାରଣ ଜ୍ୱର, ବାତଜ୍ୱର, ଗୋଦର ଓ କୋଷବୃଦ୍ଧି, ବସନ୍ତ, ହଇଜା ଇତ୍ୟାଦି ।

ଏ ଜିଲ୍ଲାରେ ସରକାରୀ ସ୍କୁଲ ନାହିଁ । ନଜଗଡ଼ ହଳଦିଆ ମୌଜାରେ ଦେଶୀୟ ପାଠଶାଳାରେ ବିଦ୍ୟାଶିକ୍ଷା ହୁଏ ।

କଙ୍ଗଡ଼ାଶିଖ ନାମକ ପାହାଡ଼ରେ ଜଙ୍ଗଲ ଅଛି । ଏହି ଜଙ୍ଗଲରୁ ଭୂସ୍ୱାମାନେ ଓ ତାହାର ନିକଟବର୍ତ୍ତୀ ଜଙ୍ଗଲରୁ ଗ୍ରାମବାସୀମାନେ ଜାଳେଣି କାଠ ଆଣନ୍ତି । ଏ ଜଙ୍ଗଲରେ ସାମାନ୍ୟ ଶାଳ, ପିଆଶାଳ ବୃକ୍ଷ ଓ ଗମ୍ଭାରି, ବାହଣ, ଧ, ନାଗଗୁଗୀ ଓ କଙ୍ଗଡ଼ା ଓଗେର କାଠମାନ ଅଛି । ଜଙ୍ଗଲରେ ବାଘ, ଭାଲୁ, ମୃଗ, ଝୁଞ୍ଚୁଙ୍ଗ, ଖୁରାଣ୍ଡି, ବାଲୁହା, ପ୍ରଭୃତି ହିଂସ୍ରଜନ୍ତୁମାନେ ଅଛନ୍ତି । ଏ ଜିଲ୍ଲା ମଧ୍ୟସ୍ଥ କୁଆପୁଟ ନାମକ ମୌଜାରେ ଜଣେ ଧୋବା ବଢ଼ାଇ କାର୍ଯ୍ୟ ଓ ଜଣେ କଂସାରି ସୁନା ରୁପା କାର୍ଯ୍ୟ ଓ ପିତଳର ମଗରମୁହିଁ ଓ ସୁନାର ଗିଲ୍ଟି କାର୍ଯ୍ୟ, ଜଣେ କମାର ପଥର କାର୍ଯ୍ୟ ଏପରି ୩ ଜଣ ଉତ୍ତମ କାର୍ଯ୍ୟ କରିପାରନ୍ତି । ଏ ଜିଲ୍ଲାରେ ବିଶେଷତଃ ପ୍ରଧାନ୨ ଆମ୍ବ ଅଛି । ଭଞ୍ଜ ଅର୍ଥାତ୍ ଭୂସ୍ୱାମାନେ ଅନେକ ଆମ୍ବ ବିକ୍ରୟ କରନ୍ତି । ଆମ୍ବ ମଧ୍ୟରେ ଗୁଣସାଗର ପ୍ରଭୃତି ନାମଧେୟ ଯେଉଁ ବୃକ୍ଷମାନ ଅଛି ତାହା ପ୍ରଧାନ ଅଟେ । ଏ ଜିଲ୍ଲା ଅନ୍ତର୍ଗତ କୁଆପୁଟ ମୌଜାରେ ବାଲୁକେଶ୍ୱର ମହାଦେବଙ୍କର ଗୋଟିଏ ପକ୍କା ଦେଉଳ ଅସମ୍ପୂର୍ଣ୍ଣ ଅଛି । କୁଆପୁଟ ଓ ମୌଜା ହଳଦିଆ ଏହି ଦୁଇ

ମୌଜାରେ ପୁଷ୍କରଣୀ ଥିବାରୁ ଜଳର ସୁବିଧା ଅଛି । ଅବଶିଷ୍ଟ ମୌଜାରେ ଜଳର ସୁବିଧା ନାହିଁ । କୁଆପୁଟ ମୌଜାରେ ବାଙ୍କ ସାଉ ଓ ସତ୍ୟବାଦୀ ମାତ୍ର ଏ ଦୁଇଜଣ ସାମାନ୍ୟ ମହାଜନ ଅଛନ୍ତି । ଭଞ୍ଜ ଅର୍ଥାତ୍ ଭୂସ୍ୱାମୀମାନେ ବନ୍ଧୁକ ମାରିବା, ଚଉପୁର ଅଦ ଖେଳ, କାଣ୍ଡ ଓ ବାଟୁଳି ଚଳାଇବା ଓଗେର ବିଦ୍ୟାମାନ ଜାଣନ୍ତି । କିନ୍ତୁ ବିଶେଷତଃ ଲୋକମାନେ ଗରିବ ଅଟନ୍ତି । ଏ କିଲ୍ଲା ଅନ୍ତର୍ଗତ କୁଆପୁଟ ମୌଜାରେ କୁଞ୍ଜଘର ନାମକ ଏକଗୋଟି କଲ୍ଲଘର ଅଛି । ପ୍ରଜାମାନେ ଆପଣା ଆପଣା ମଧ୍ୟରେ ଚାନ୍ଦା କରି ବର୍ଷଭରିର ଯାତ୍ରା କରନ୍ତି । ହାଟସାହି ମୌଜାରେ ଜଳର ସୁବିଧା ନ ଥିବାରୁ କୁଆପୁଟ ମୌଜାରେ ଥିବା ପୁଷ୍କରଣୀରେ ଜଳଦାବ ସ୍ନାନପାନ କରନ୍ତି । ଏ କିଲ୍ଲାରେ ସାରଦ ଧାନ ଖା ୧ ଜମିରେ ଫି ମା୧ ଣିକୁ ଅର୍ଥାତ୍ ଏ ୦·୦୫୦ ଜମିରେ କଟକୀ ୭ ଯେଉ ଗୌଣିରେ ଗୌ ୫୦ ଣି ଓ ଖା ୨ ଜମିରେ ଗୌ ୪୦ ଣି, ଅଥବା ଗୌ ୩୫ ଣି ଓ ଖା ୩ ଜମିରେ ୨୫ ଗୌଣି ଅଥବା ୨୦ ଗୌଣି ।

Sd B. M. Kanungo
28.8.1879

ଶ୍ରୀ ମାଧ୍ୱାଧର ଦାସ
ହେଡ୍ ମୋହରର

J. N. Mohapatra
R. C.

Certified to be true copy.
Ramakrushna Das
Head Clerk &
Seristadar

୧୮ । ୮ । ୧୯୭୫

# ପଢ଼ନ୍ତୁ

୧ । ପଦମାହାତ୍ମ୍ୟ ।

୨ । ଗୟାଶ୍ରାର୍ଦ୍ଧ ।

୩ । ଗୋଦାବସ୍ତ ବୁଢ଼ ।

୪ । ପାଦଗୟା ।

୫ । ଅମୂଲ୍ୟ ସ୍ମରଣେ ।

୬ । ମଧୂଚ୍ଛନ୍ଦା (ପଦ୍ୟ) ।

୭ । ମଧୂଚ୍ଛନ୍ଦା (ଗଦ୍ୟ) ।

୮ । ସୁଅପଡ଼ା ।

୯ । ପୁରୁଷୋତ୍ତମ ସ୍ମରଣିକା ।

୧୦ । ମନସ୍ୱୀ ଦିବ୍ୟସିଂହ ପଟ୍ଟନାୟକ ।

୧୧ । ବଦ୍ରିନାଥ ଧାମ ।

୧୨ । ଅମୂଲ୍ୟ ଅନୁଭୂତି ।

୧୩ । ଅମୃତ ଅନୁଭୂତି ।

୧୪ । ଦୁଇଟି ସୁମନ ଗୋଟିଏ ବୃନ୍ତ ।

୧୫ । ଅମୂଲ୍ୟ ସ୍ମରଣେ ।

